# ଜାଲନ୍ଧର ଦେବ ରଚନାବଳୀ

( ପ୍ରଥମ ଖଣ୍ଡ )

ସଂକଳକ : ଶ୍ରୀ ରାମଚନ୍ଦ୍ର ଭୃଙ୍ଗା



ଓଡ଼ିଶା ସାହିତ୍ୟ ଏକାଡେମୀ

# ଜଳନ୍ଧର ଦେବ ରଚନାବଳୀ

( ପ୍ରଥମ ଖଣ୍ଡ )

ସଂକଳକ

ଶ୍ରୀ ରାମଚନ୍ଦ୍ର ବ୍ରହ୍ମା




ଓଡ଼ିଶା ସାହିତ୍ୟ ଏକାଡେମୀ

# ଜଳନ୍ଧର ଦେବ ରଚନାବଳୀ

(ପ୍ରଥମ ଖଣ୍ଡ)

ସଂକଳକ : ଶ୍ରୀ ରାମଚନ୍ଦ୍ର ବ୍ରହ୍ମା

ପ୍ରକାଶକ : ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୧୪

ମୁଦ୍ରଣ : ସତ୍ୟବ୍ରତ ପ୍ରେସ
ପିଠାପୁର, କଟକ-୧

ପ୍ରଥମ ପ୍ରକାଶ : ୧୯୮୬—୧୦୦୦

ମୂଲ୍ୟ : ~~ପଇଁଚାଳିଶ ଟଙ୍କା ମାତ୍ର~~ 52/-

**JALANDHARA DEV RACHANAVALI**

Compiled by
**Shri Ramachandra Brahma**

Published by
**Orissa Sahitya Akademi**
Bhubaneswar-14

Printed at
**Satyabrata Press**
Pithapur, Cuttack-1

First Edition :
**1986—1000** Copies

Price : ~~Rs. 45/-~~ 52/-

# ଅଗ୍ରଲେଖ

'ଶ୍ରୀଧର୍ମଂସ କେଳସର' ବାମଣ୍ଡା, ସାରସ୍ୱତ ସାଧନା ଓ ଚର୍ଚ୍ଚାର ପ୍ରଧାନ ପୀଠ ରୂପେ ସୁପରିଚିତ । ବିଶେଷତଃ ବାମଣ୍ଡା ରାଜବଂଶର ଓଡ଼ିଆ ସାହିତ୍ୟକୁ ଦାନ ଅତୁଳନୀୟ ଓ ଅବିସ୍ମରଣୀୟ । ଏହି ରାଜବଂଶର ଯେଉଁ ବରପୁତ୍ରମାନେ ସେମାନଙ୍କର ସାରସ୍ୱତ ସୃଷ୍ଟି-ସମ୍ଭାରରେ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ ଓ ପୁଷ୍କଳ କରିଯାଇଅଛନ୍ତି ସେମାନଙ୍କ ମଧ୍ୟରେ ସାହିତ୍ୟାନୁରାଗୀ ରାଜା ବାସୁଦେବ ସୁଢ଼ଳଦେବ, ରାଜକବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ସାହିତ୍ୟିକ ଜଳନ୍ଧର ଦେବ ଏବଂ ବଡ଼କୁମାର ବଳଭଦ୍ରଦେବ ଅଗ୍ରଗଣ୍ୟ । ସୁଢ଼ଳଦେବ, ସଚ୍ଚିଦାନନ୍ଦ ଓ ବଳଭଦ୍ରଦେବ ଏହି କାବ୍ୟ-ପ୍ରତିଭାତ୍ରୟୀଙ୍କର ସାହିତ୍ୟକୃତିରେ ଓଡ଼ିଆ କାବ୍ୟ-ସାହିତ୍ୟ ସମୃଦ୍ଧ । ସେମାନଙ୍କର ପ୍ରଗାଢ଼ ସାହିତ୍ୟାନୁରାଗ ତଥା କାବ୍ୟିକ-ସମ୍ଭାର ଦ୍ୱାରା ବାମଣ୍ଡାରେ ଏକ ଉଚ୍ଚକୋଟୀର ସାହିତ୍ୟିକ ତଥା ସାଂସ୍କୃତିକ ବାତାବରଣ ସୃଷ୍ଟି ହୋଇପାରିଥିଲା ।

ଜଳନ୍ଧର ଦେବ (୧୮୭୨-୧୯୫୧) ଥିଲେ ଓଡ଼ିଆ ସାହିତ୍ୟରେ ଜଣେ ବହୁମୁଖୀ ପ୍ରତିଭା । ଅବିଶ୍ରାନ୍ତ ଭାବେ ଲେଖନୀ ଚାଳନକରି ସେ ଓଡ଼ିଆ ସାହିତ୍ୟର ଶ୍ରୀ ଓ ସମୃଦ୍ଧି ସାଧନ କରିଥିଲେ । ଏକାଧାରରେ ସେ ଥିଲେ ଜଣେ ବିଶିଷ୍ଟ ପ୍ରାବନ୍ଧିକ, ଉଚ୍ଚକୋଟୀର ସମାଲୋଚକ, ଲବ୍ଧପ୍ରତିଷ୍ଠ ଗାଳ୍ପିକ ଓ ନାଟ୍ୟକାର । ବାମଣ୍ଡା ପ୍ରଶାସନର ବିଭିନ୍ନ କ୍ଷେତ୍ରରେ ସେ ଦକ୍ଷତାର ସହିତ କାର୍ଯ୍ୟ କରିଥିଲେ ହେଁ ସାହିତ୍ୟ-ସାଧନା ତାଙ୍କ ଜୀବନର ପରମ ବ୍ରତ ଥିଲା । ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ଐକାନ୍ତିକ ନିଷ୍ଠା ଓ ଦୃଢ଼ ସଂକଳ୍ପ ଫଳରେ ତାଙ୍କ ଅମର ଲେଖନୀରୁ ନିଃସୃତ ହୋଇଥିଲା ଅଜସ୍ର ସୃଜନଶୀଳ ଓ ମନନଶୀଳ ସାହିତ୍ୟକୃତି । ଉତ୍କଳ ସାହିତ୍ୟ, ସହକାର, ରସଚକ୍ର, ଜ୍ଞାନପ୍ରଦୀପ, ଉପହାର, ଶଙ୍ଖ ପ୍ରଭୃତି ସାହିତ୍ୟ-ପତ୍ରିକାମାନଙ୍କରେ ତାଙ୍କର ସୃଷ୍ଟିଧର୍ମୀ ବହୁ ପ୍ରବନ୍ଧ, ସାର୍ଥକ ଗଳ୍ପ, କବିତା, ଏକାଙ୍କିକା ଓ ନାଟକାଦି ଧାରାବାହିକ ଭାବେ ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିପାରିଥିଲା । ସେ ଜଣେ ସୁଦକ୍ଷ ବକ୍ତା ଭାବରେ ଖ୍ୟାତି ଅର୍ଜନ କରିଥିଲେ । ବହୁଶାସ୍ତ୍ର ଅଧ୍ୟୟନକରି ଜଣେ ଶାସ୍ତ୍ରଜ୍ଞ ହିସାବରେ ସେ ସୁପରିଚିତ ଥିଲେ । ସଂସ୍କୃତ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । 'ଶଙ୍ଖ' ମାସିକ ପତ୍ରିକାର ସମ୍ପାଦକ ରୂପେ ସେ କିଛୁକାଳ କାର୍ଯ୍ୟ ନିର୍ବାହକରି ଉଚ୍ଚ ପ୍ରଶଂସିତ ହୋଇପାରିଥିଲେ ।

## ସାହିତ୍ୟକୃତି :

**ପ୍ରବନ୍ଧ ସାହିତ୍ୟ :** ବୈଦିକ ଓ ପୌରାଣିକ ଯନ୍ତ୍ରକଳ୍ପ (୧୯୧୩), ଭଗବଦ୍‌ଗୀତା (୧୯୧୫), ଆମ୍ଭମାନଙ୍କର ଯାନ ଓ ଅସ୍ତ୍ରଶସ୍ତ୍ର (୧୯୧୬), ରାମାୟଣ (୧୯୧୬), ସ୍ୱଗତ (୧୯୧୭), ସାହିତ୍ୟ ଓ ଜାତି (୧୯୨୯) ଜ୍ୟୋତିର୍ବିଦ୍ୟାର ଜନ୍ମ (୧୯୩୧), ବୁଦ୍ଧଦେବଙ୍କ ଜନ୍ମସ୍ଥାନ (୧୯୩୨), ବେଦ ଓ ହିନ୍ଦୁଧର୍ମ (୧୯୩୨), ରାଜା ରାମମୋହନ (୧୯୩୪), ବର୍ଣ୍ଣ ଓ ଜାତିବିଚାର ୧୯୩୪), ନର ଓ ନାରୀ (୧୯୩୬)

**ଗଳ୍ପ ସାହିତ୍ୟ :** ଗୋଟିଏ କଥା (୧୯୧୫), ମିଥ୍ୟା ଅଭିଯୋଗ (୧୯୨୧), ଅତିଥି ସତ୍କାର (୧୯୨୮), ଭିନ୍ନଗତି ଭିନ୍ନମତି (୧୯୨୮), ଗୌରୀ ଓ କାନ୍ଥୁ (୧୯୨୮), ଆଲୁ ନାରୁଣୀ (୧୯୨୯), ମସ୍ତିରାମର ମୁକ୍ତି (୧୯୩୧), ବିବାହ ଭୋଜି (୧୯୩୨), ପ୍ରକୃତିର ପ୍ରତିଶୋଧ (୧୯୩୩), ସନ୍ତାନ ସ୍ନେହ (୧୯୩୨), ଅଶ୍ରୁଧାରା (୧୯୩୫) ।

**ନାଟକ, ଏକାଙ୍କିକା :** ଉଦୟ ସିଂହ (ଐତିହାସିକ ନାଟକ), ବିଚ୍ଛେଦ (୧୯୩୨)-ଏକାଙ୍କିକା, ରଣାସଂଘଙ୍କର ମହାପ୍ରୟାଣ (୧୯୩୩)-ଏକାଙ୍କିକା ।

କବିତା : ମେଘ ଭାବନା (ନାଟଗର୍ଭିକ କବିତା), ସ୍ୱର୍ଗତ ବିଶ୍ୱନାଥଙ୍କ ପ୍ରତି, ଅନ୍ନପୂର୍ଣ୍ଣା (୧୯୩୪) ।

ଭ୍ରମଣ କାହାଣୀ : ଡାଏରୀର କିୟଦଂଶ ।

ଜଳନ୍ଧର ଦେବଙ୍କର ଅସଂଖ୍ୟ ସାହିତ୍ୟ-କୃତି ମଧ୍ୟରୁ କେବଳ ଭାଷା ଓ ସାହିତ୍ୟ ଏବଂ ଧର୍ମ ଓ ସଂସ୍କୃତି ସଂପର୍କିତ କେତେକ ବିଶିଷ୍ଟ ପ୍ରବନ୍ଧ ଓ ସମାଲୋଚନାକୁ ସଂକଳିତ ଏହି ପୁସ୍ତକରେ ସ୍ଥାନିତ କରାଯାଇଛି । ଜଣେ ପ୍ରତିଷ୍ଠିତ ପ୍ରାବନ୍ଧିକ ହିସାବରେ ଓଡ଼ିଆ ସାହିତ୍ୟରେ ତାଙ୍କର ସମାଲୋଚନାର ପରିସର ଥିଲା ସୁଦୂରପ୍ରସାରୀ । ତାଙ୍କ ଆଲୋଚନାଗୁଡ଼ିକ ବୈଦିକ, ପୌରାଣିକ, ଆଧ୍ୟାତ୍ମିକ, ଓ ଦାର୍ଶନିକ ତଥ୍ୟ ଓ ତର୍କସମ୍ବଳିତ ତାତ୍ତ୍ୱିକ ଆଲୋଚନାରେ ରସାଣିତ ।

ସଂକଳକ ଶ୍ରୀ ରାମଚନ୍ଦ୍ର ବ୍ରହ୍ମା ବହୁ ଶ୍ରମ ସ୍ୱୀକାରପୂର୍ବକ ଜଳନ୍ଧର ଦେବଙ୍କ ଲେଖାଗୁଡ଼ିକୁ ବିଭିନ୍ନ ପତ୍ରପତ୍ରିକାରୁ ସଂଗ୍ରହ କରି ଏହି ସଂକଳନରେ ସଂଯୋଜିତ କରିଅଛନ୍ତି; ଏଣୁ ସେ ପ୍ରଶଂସାର ପାତ୍ର । ଏତଦ୍‌ବ୍ୟତୀତ ବହୁ ଲେଖା ସେ ସଂଗ୍ରହ କରି ଏକାଡେମୀକୁ ପ୍ରଦାନ କରିଅଛନ୍ତି ଯାହା ଏହି ସଂକଳନର ସୀମିତ କଳେବର ମଧ୍ୟରେ ସ୍ଥାନିତ କରିବା ସମ୍ଭବ ହୋଇପାରିନାହିଁ । ସମୟ ଓ ସୁବିଧା ଅନୁକ୍ରମେ ତାଙ୍କର ଅନ୍ୟାନ୍ୟ ସାହିତ୍ୟ-କୃତିଗୁଡ଼ିକୁ ସଂକଳିତ କରି ଲୋକଲୋଚନକୁ ଆଣିବା ପାଇଁ ପ୍ରୟାସୀ ହେବୁଁ ।

ଏ ସଂକଳନଟି ଶ୍ରଦ୍ଧାଳୁ ପାଠକପାଠିକା ମହଲରେ ଆଦୃତ ହେବ ବୋଲି ମୁଁ ଆଶା କରୁଛି ।

ଭୁବନେଶ୍ୱର,
ତା ୧୧ । ୭ । ୮୭

ସୁରେନ୍ଦ୍ରନାଥ ଶତପଥୀ
ସମ୍ପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ମୁଖବନ୍ଧ

ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଜଳନ୍ଧର ଦେବଙ୍କ ସାହିତ୍ୟିକ ଜୀବନ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ଦୀର୍ଘ ୬୦ ବର୍ଷର (୧୮୯୦-୧୯୫୦) ଇତିହାସ । ତେଣୁ ତାଙ୍କ ଜୀବନକାଳ ମଧ୍ୟରେ ପ୍ରକାଶିତ ବିଭିନ୍ନ ପତ୍ରପତ୍ରିକା, 'ସମ୍ବଲପୁର-ହିତୈଷିଣୀ' 'ଉତ୍କଳସାହିତ୍ୟ', 'ଆଲୋଚନା', 'ସହକାର', 'ରସଚକ୍ର', 'ଭକ୍ତପ୍ରଦୀପ', 'ଉପହାର', 'ଶଙ୍ଖ' ପ୍ରଭୃତିରେ ତାଙ୍କର ବହୁ ପ୍ରବନ୍ଧ, ଗଳ୍ପ ଏବଂ କେତେକ ନାଟକ କବିତାଦି ପ୍ରକାଶ ଲଭକରି ଏକ ଉଚ୍ଚକୋଟୀର ସାହିତ୍ୟିକ ବାତାବରଣ ସୃଷ୍ଟି କରିଥିଲା । ଏହି ସୁନାମଧନ୍ୟ ସାହିତ୍ୟିକଙ୍କ ରଚନାକୃତିକୁ ପର୍ଯ୍ୟାଲୋଚନା କରିବା ପୂର୍ବରୁ ଏକ ସଂକ୍ଷିପ୍ତ ପରିଚୟ ପ୍ରଦାନ କରିବା ବିଧେୟ ।

**ସଂକ୍ଷିପ୍ତ ପରିଚୟ :**

୧୮୭୨ ମସିହା ଅକ୍ଟୋବର ମାସ ୧୫ ତାରିଖରେ ଓଡ଼ିଶାର ଫ୍ୟୁଡେଟରି ଷ୍ଟେଟ୍ ବାମଣ୍ଡା ଅନ୍ତର୍ଗତ "ବରିଆଁ କଲଣ୍ଡା' ଗ୍ରାମରେ ଗଙ୍ଗବଂଶୀୟ ରାଜପରିବାରରେ (ଖରପୋଷଦାର) ଜଳନ୍ଧର ଦେବ ଆବିର୍ଭୂତ ହେଲେ । ପିତା ବୀରଭଦ୍ର ଦେବ ଅଳ୍ପଦିନେ ମାତୃବିୟୋଗ ହେତୁ ତାଙ୍କୁ ରାଜା ବାସୁଦେବ ସୁଡ଼ଳ-ଦେବଙ୍କ ଦ୍ୱିତୀୟ ମାତା ବିଜୟକୁମାରୀ ଦେବୀଙ୍କ ହସ୍ତରେ ଲାଳନପାଳନର ଭାର ନ୍ୟସ୍ତ କଲେ । ତେଣୁ ଟୀକାୟତ ସଚ୍ଚିଦାନନ୍ଦଙ୍କ ସହିତ ଛାତ୍ରଜୀବନ ଆରମ୍ଭ କଲେ । ଉଭୟେ ସମବୟସ୍କ ହେତୁ ପ୍ରବେଶିକା ପରୀକ୍ଷା ପର୍ଯ୍ୟନ୍ତ (୧୮୯୪-୯୨) ସହାଧ୍ୟାୟୀଭାବେ ଗତି କଲେ । ବଣେଇ ରାଜ୍ୟ ଅନ୍ତର୍ଗତ 'ଲଇମୁରା' ଗ୍ରାମର (ଖରପୋଷଦାର) ଅଭିରାମ ଦେବଙ୍କ କନ୍ୟା ସତ୍ୟଭାମାଙ୍କ ସଙ୍ଗେ ପରିଣୟ ସମ୍ପନ୍ନ ହେଲା ।

୧୮୯୫ ସାଲ ଆଡ଼କୁ କର୍ମ ଜୀବନର ଆରମ୍ଭ । ବିଭିନ୍ନ ପ୍ରଶାସନିକ କାର୍ଯ୍ୟ (ସିରସ୍ତାଦାର, ତହସିଲ-ଦାର, ଦେଓ୍ୱାନ ତଥା ପ୍ରଥମ ଶ୍ରେଣୀ ବିଚାରପତି ପ୍ରଭୃତି) ଦକ୍ଷତାର ସହିତ ସମ୍ପାଦନପୂର୍ବକ ୧୯୨୪ ଖ୍ରୀଷ୍ଟାବ୍ଦରେ ଅବସର ଗ୍ରହଣ କଲେ । କର୍ମ-ଜୀବନରେ ସାହିତ୍ୟିକ-ପ୍ରତିଭାର ଅଭ୍ୟୁଦୟ ସାଧିତ । ଜଳନ୍ଧର ଦେବଙ୍କ ସାହିତ୍ୟିକ ଜୀବନ ତିନୋଟି ପର୍ଯ୍ୟାୟ ଅନ୍ତର୍ଭୁକ୍ତ ।

୧ମ ପର୍ଯ୍ୟାୟ (୧୮୯୦-୧୯୦୩) ଅଭ୍ୟୁଦୟ କାଳ

୨ୟ ପର୍ଯ୍ୟାୟ (୧୯୦୪-୧୯୨୪) ଉନ୍ମେଷ ,,

୩ୟ ପର୍ଯ୍ୟାୟ (୧୯୨୫-୧୯୫୦) ପରିଣତ ,,

ପ୍ରଥମ ପର୍ଯ୍ୟାୟରେ 'ବାମଣ୍ଡା କ୍ଲବ' ସମିତି (୧୮୯୦) ଗଠନ ଓ ପ୍ରବନ୍ଧ ପ୍ରତିଯୋଗିତା ଏକ ମୁଖ୍ୟ ଅଂଶ । ଏତଦ୍ ବ୍ୟତୀତ ଶଂସିତ କାଳରେ ତିନୋଟି ପତ୍ରିକା (ସମ୍ବଲପୁର ହିତୈଷିଣୀ, 'ଆଲୋଚନା' 'ଉତ୍କଳମଧୁପ')ର କୋଷାଧ୍ୟକ୍ଷ ରୂପେ କାର୍ଯ୍ୟ ସମ୍ପାଦନ (୧୯୦୦) ତାଙ୍କ ସାହିତ୍ୟ-ପ୍ରୀତିର ଶ୍ରେଷ୍ଠ ନିଦର୍ଶନ । 'ଆଲୋଚନା' ମାସିକ ପତ୍ରିକାର ସମ୍ପାଦନା (୧୯୦୦-୧୯୦୧) ତାଙ୍କର ସାହିତ୍ୟିକ ପ୍ରତିଭାର ପରିଚୟ ପ୍ରଦାନ କରେ । ଦ୍ୱିତୀୟ ପର୍ଯ୍ୟାୟରେ ବାମଣ୍ଡାରେ ଶିକ୍ଷା ତଥା ସାହିତ୍ୟର ଉନ୍ନତିକଳ୍ପେ ପଦକ୍ଷେପ ଗ୍ରହଣ ସ୍ୱରୂପ ବିଭିନ୍ନ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ଦିଗରେ ମନୋନିବେଶ କଲେ । ଏତଦ୍ବ୍ୟତୀତ 'ସିଂହଳ-ଭ୍ରମଣ' ଉଦ୍ଦେଶ୍ୟରେ ଯାତ୍ରା ଓ ଭ୍ରମଣ-ବୃତ୍ତାନ୍ତ

ରୂପେ 'ଡାଏରୀର କିୟଦଂଶ'ର ଆତ୍ମପ୍ରକାଶ 'ଡାଲଟେର ଭ୍ରମଣ', 'ପୁଷ୍ପ-ଭ୍ରମଣ' ଓ 'ବିହାର-ଭ୍ରମଣ' ବୃତ୍ତାନ୍ତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରନ୍ତି ତାଙ୍କ ସାହିତ୍ୟିକ-ଜୀବନର ତୃତୀୟ ପର୍ଯ୍ୟାୟରେ ।

ଏହି ପର୍ଯ୍ୟାୟ ହିଁ ତାଙ୍କ ପ୍ରକୃଷ୍ଟ ସାହିତ୍ୟିକ-ପ୍ରତିଭାର ଶ୍ରେଷ୍ଠ ପରିଚାୟକ, ଯହିଁରେ ସତ୍ୟବାଦୀ ଏବଂ ସବୁଜ ଯୁଗୀୟ ଚିନ୍ତାଧାରା ତାଙ୍କ ଲେଖନୀକୁ ଉଜ୍ଜୀବିତ ତଥା ରଚନାଶୈଳୀକୁ ଅନୁପ୍ରାଣିତ କରିଛି । ବିଭିନ୍ନ ସାହିତ୍ୟିକ ସଭାନୁଷ୍ଠାନ (କଲିକତା, ବାରିପଦାର ଶିଶୁ-ସାହିତ୍ୟ ସମାଜ, କଟକର ଉତ୍କଳ-ସାହିତ୍ୟ-ସମାଜ ପ୍ରଭୃତି)ରେ ଭାଷଣ ପ୍ରଦାନ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତିର ନିଦର୍ଶନ । 'ଶଙ୍ଖ' ମାସିକ ପତ୍ରିକାର ସମ୍ପାଦନା ( ୯୪୭-୪୮) ତାଙ୍କର ସାହିତ୍ୟ-ପ୍ରୀତିର ପରିଚାୟକ ।

ରାଜନୈତିକ କ୍ଷେତ୍ରରେ ଓଡ଼ିଶା-ବିଧାନସଭାରେ ଦୁଇବର୍ଷରୁ (୧୯୪୯-୫୧) ଊର୍ଦ୍ଧ୍ୱକାଳ ସଦସ୍ୟ ରୂପେ କାର୍ଯ୍ୟ ସମ୍ପାଦନ କରି ସୁନାମ ଅର୍ଜନ କଲେ ।

ଜଳନ୍ଧର ଦେବଙ୍କ ସମାଜ-ସଂସ୍କାର-ପରିକଳ୍ପନା ଅତ୍ୟନ୍ତ ଆଦର୍ଶସ୍ଥାନୀୟ । ବାଲ୍ୟ ବିବାହର ବିରୋଧ, ଯୁବତୀ-ବିବାହ ତଥା ବିଧବା-ବିବାହର ସମାଜରେ ପ୍ରଚଳନ ନିମନ୍ତେ ଏକ ବିଶିଷ୍ଟ କୃତି 'ବିବାହ-ବିଗ୍ରହ' ପୁସ୍ତକର ପ୍ରଣୟନ ଏବଂ ଏତଦ୍‌ବ୍ୟତୀତ ଦୀନହୀନ ଅସ୍ପୃଶ୍ୟ ଜାତି ତଥା ଆଦିମ ଅଧିବାସୀଙ୍କ ଦୈନନ୍ଦିନ-ଜୀବନଚିତ୍ରକୁ ଲୋକ-ଲୋଚନକୁ ଆଣିବା ନିମନ୍ତେ ଗଳ୍ପ, ନାଟକ ତଥା କବିତାଦିର ରଚନା ଏକ ସାମାଜିକ ପରିବର୍ତ୍ତନର ସହାୟକ ।

ଜଣେ ନିର୍ଭୀକ ସ୍ପଷ୍ଟବାଦୀ ସମାଲୋଚକ, ସୁଦକ୍ଷ ସମ୍ପାଦକ, ସରସ ଗାଳ୍ପିକ, ସ୍ୱାଧୀନଚେତା ସମାଜ-ସଂସ୍କାରକ, ସୂକ୍ଷ୍ମ ସମାଲୋଚକ, ଭାବପ୍ରବଣ କବି, ଆଦର୍ଶ ପ୍ରଶାସକ ତଥା ଉଚ୍ଚକୋଟୀର ପ୍ରାବନ୍ଧିକ ରୂପେ ତାଙ୍କର ସୁଖ୍ୟାତି ସର୍ବତ୍ର ପରିବ୍ୟାପ୍ତ ।

ଏହି ମହାନ୍ ସାହିତ୍ୟ-ସେବକର ମହାପ୍ରୟାଣ ଘଟିଲା ୧୯୫୨ ମସିହା ଅକ୍ଟୋବର ୨୬ ତାରିଖ ଗୋଷ୍ଠାଷ୍ଟମୀ ତିଥିରେ ।

**ସୂଚନ :**

ଜଳନ୍ଧର ଦେବଙ୍କ ସାହିତ୍ୟ-କୃତି-ସମ୍ଭାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ଲାଭ କରି ବିକ୍ଷିପ୍ତ ଭାବରେ ପଡ଼ିଥିଲା । ତାକୁ ଏକତ୍ର ସନ୍ନିବେଶିତ କରି ପୁସ୍ତକାକାରରେ ପ୍ରକାଶ କରିବା ନିମିତ୍ତ ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରୟାସ ସର୍ବାଦୌ ପ୍ରଶଂସାର୍ହ । ସେ ସମସ୍ତର ସଙ୍କଳନ ଦାୟିତ୍ୱ ପ୍ରଦାନ କରିଥିବାରୁ ସଙ୍କଳକ ଉକ୍ତ ମହତ ଅନୁଷ୍ଠାନ ପ୍ରତି ଚିରକୃତଜ୍ଞତା ପ୍ରକାଶ କରେ ଓ ତା ସଙ୍ଗେ ସଙ୍ଗେ ଏକ କ୍ଷୁଦ୍ର ମୁଖବନ୍ଧ ଦୃଷ୍ଟିରୁ ସଂକ୍ଷିପ୍ତ ସୂଚନା ମାତ୍ର ସନ୍ନିବେଶିତ କରେ । ତେଣୁ ଏହା ସମାଲୋଚନା ନୁହେଁ । କାରଣ ସମାଲୋଚନାର ସ୍ଥାନ ସ୍ୱତନ୍ତ୍ର । ସାହିତ୍ୟିକ ଜଳନ୍ଧର ଦେବଙ୍କ ବିଭିନ୍ନ କୃତି ତାଙ୍କ ଜୀବନକାଳ ମଧ୍ୟରେ କେଉଁ କେଉଁ ପରିବେଶ ମଧ୍ୟରେ ଆତ୍ମପ୍ରକାଶ କରି କିପରି ସାମାଜିକ ଚେତନା ଜାଗ୍ରତ ତଥା ପ୍ରଭାବ ବିସ୍ତାର କରିଥିଲେ ତାହାହିଁ ଲକ୍ଷ୍ୟ କରିବା ତଥା ବିଚାର କରିବା ଉଚିତ । ଏହି ପରିପ୍ରେକ୍ଷୀରେ ସମସ୍ତ କୃତିର ସଂକ୍ଷିପ୍ତ ସୂଚନା ପ୍ରଣିଧାନଯୋଗ୍ୟ ।

ଜଳନ୍ଧର ଦେବଙ୍କ ଜୀବନକାଳ ମଧ୍ୟରେ ବିଶେଷତଃ ପ୍ରାୟ ୬୦ ବର୍ଷ କାଳ (୧୮୯୦-୧୯୫୦) ମଧ୍ୟରେ ବିଭିନ୍ନ ପତ୍ରପତ୍ରିକାରେ ଯେଉଁ ପ୍ରବନ୍ଧସବୁ ପ୍ରକାଶିତ ବିଭିନ୍ନ ଲକ୍ଷଣିକ ଦୃଷ୍ଟିରୁ ୮ଟି ଭାଗରେ ବିଭକ୍ତ କରାଯାଏ —

(୧) ଭ୍ରମଣ-ସାହିତ୍ୟ (୨) ସଭ୍ୟତା ଓ ସଂସ୍କୃତି (୩) ଭାଷା ଓ ସାହିତ୍ୟ (୪) ଜାତି ଓ ସମାଜ (୫) ଜ୍ୟୋତିର୍ବିଦ୍ୟାତତ୍ତ୍ୱ (୬) ପୁରାଣ-ସାହିତ୍ୟ (୭) ବୌଦ୍ଧିକ ସାହିତ୍ୟ (୮) ବିବିଧ ।

୧୮୮୯ ସାଲରେ ବାମଣ୍ଡାରୁ ପ୍ରକାଶିତ 'ସମ୍ବଲପୁର-ହିତୈଷିଣୀ' ସାପ୍ତାହିକ ପତ୍ରିକାରେ କେତେକ ପ୍ରବନ୍ଧ ପ୍ରକାଶିତ । (ମହରମର ଇତିବୃତ୍ତ, ଭାରତୀୟ ରମଣୀମାନଙ୍କର ଦୂରବସ୍ଥା ଓ ଶ୍ରବଣ-ବିଚାର' ।)

ଜଳବାୟୁର ପରିବର୍ତ୍ତନ ନିମନ୍ତେ ୧୯୧୦ ସାଲରେ କଲିକତାରୁ ସିଂହଳ ଅଭିମୁଖେ ଯାତ୍ରାକରି ପରିଭ୍ରମଣଜନିତ ଅନୁଭୂତିକୁ ଟିପାଖାତାରେ (ଡାଏରୀ)ରେ ଲିପିବଦ୍ଧ କଲେ । ତାର କିୟଦଂଶ ତାଙ୍କ ଯମଜପୁତ୍ର ହରପ୍ରସାଦଦେବ' 'ଡାଏରୀର କିୟଦଂଶ'ଙ୍କ ଦ୍ୱାରା ନାମରେ (ସିଂହଳ ଭ୍ରମଣ) ଆତ୍ମପ୍ରକାଶ କଲା ।

ଏତଦ୍‌ବ୍ୟତୀତ ତାଲଚେର-ଭ୍ରମଣ, ପୁରୀ-ଭ୍ରମଣ ଓ ବିହାର-ଭ୍ରମଣଜନିତ ଅନୁଭୂତିକୁ ଟିପାଖାତାରେ ଲେଖି 'ଡାଏରୀର କିୟଦଂଶ' ରୂପେ ପ୍ରକାଶ କଲେ 'ଉତ୍କଳ-ସାହିତ୍ୟ' ପତ୍ରିକାରେ ଯାହାକି ତତ୍କାଳୀନ ସମାଜରେ ବିଶେଷ ପ୍ରଭାବ ପକାଇ ପାରିଥିଲା ।

ସାହିତ୍ୟ ଓ ସଂସ୍କୃତି ମୂଳକ ତେରଗୋଟି ପ୍ରବନ୍ଧ ତାଙ୍କ ସାହିତ୍ୟିକ ତଥା ସାଂସ୍କୃତିକ ଚେତନାର ପରିଚୟ ପ୍ରଦାନ କରନ୍ତି । 'ମହରମ୍‌ର ଇତିବୃତ୍ତ' ମୁସଲମାନଧର୍ମର ପରମ୍ପରା ଉପରେ ଆଧାରିତ । ଆର୍ଯ୍ୟଜାତିର ଆଦିଗ୍ରନ୍ଥ ବେଦର ଭିତ୍ତିଭୂମି ଉପରେ ଆଧାରିତ ଆର୍ଯ୍ୟଧର୍ମର ସ୍ୱରୂପ ନିର୍ଦ୍ଧାରଣ କରେ ବୈଦିକ ଓ ପୌରାଣିକ ଯୁକ୍ତିକଣ୍ଟିତ ପ୍ରବନ୍ଧ (୧୯୧୩) ।

ପ୍ରାବନ୍ଧିକ ଜଳନ୍ଧରଦେବଙ୍କ ଉତ୍କଳ-ସାହିତ୍ୟ-ପ୍ରୀତି ସଙ୍ଗେ ଦେଶପ୍ରୀତି ଅତ୍ୟନ୍ତ ଗଭୀର ଥିଲା । ବିଭିନ୍ନ ଅସ୍ତିତ୍ୱର ସ୍ୱରୂପ ବିଶ୍ଳେଷଣ କରେ 'ଆମ୍ଭମାନଙ୍କର ଯାନ ଓ ଅସ୍ତିତ୍ୱ' । ଏଥିରେ ଜାତୀୟ-ଚେତନାର ଆଭାସ ମିଳେ "ଆମ୍ଭମାନଙ୍କର କର୍ତ୍ତବ୍ୟ କଣ ? ନିଜ ଦେଶର, ନିଜ ଜାତିର ମାହାତ୍ମ୍ୟ ବର୍ଣ୍ଣନା କରିବା । ମାତ୍ର ଆମ୍ଭେମାନେ ମନୁଷ୍ୟ । ଏ ହିସାବରେ ପୃଥିବୀର ସମସ୍ତ ମନୁଷ୍ୟ ଜାତିର ବିଷୟ ନିଷ୍ପକ୍ଷପାତ ଭାବରେ ପ୍ରକାଶ କରିବା ଏବଂ ଆମ୍ଭ ଜାତିର ସ୍ଥାନ ଅନ୍ୟ ଜାତିର ସ୍ଥାନ ତୁଳନାରେ କେଉଁଠାରେ ତାହା ନିର୍ଦ୍ଧାରଣ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।"

ଅବସର ଗ୍ରହଣ ପରେ ଜଳନ୍ଧର ଦେବ ସମାଜ-ସଂସ୍କାରମୂଳକ କାର୍ଯ୍ୟରେ ଗଭୀର ଭାବରେ ମନୋନିବେଶ କଲେ । ୧୯୧୮-୧୯ ବେଳକୁ 'ବାଲ୍ୟବିବାହ' ବିରୁଦ୍ଧରେ ସ୍ୱର ଉତ୍ତୋଳନ ପୂର୍ବକ ଯୁବତୀ ଓ ବିଧବା-ବିବାହର ପ୍ରଚଳନ ନିମିତ୍ତ ବହୁ ଶାସ୍ତ୍ର ଅଧ୍ୟୟନ, ଅନୁଶୀଳନ ପୂର୍ବକ 'ବିବାହ-ବିଚାର' ନାମକ ଏକ ପୁସ୍ତକ ପ୍ରଣୟନ କଲେ, ଯାହାର ସାମାଜିକ ମୂଲ୍ୟବୋଧ ଅତ୍ୟନ୍ତ ଉଚ୍ଚକୋଟୀର । ତିନୋଟି ଅଧ୍ୟାୟରେ ସନ୍ନିବେଶିତ କରି ଲେଖିଲେ । ଆଶାବାଦୀ ଲେଖକ ପ୍ରକାଶ କଲେ, "ଦେଶର ଯୁବକଗଣ ଏକମାତ୍ର ଆଶାଭରସାର ସ୍ଥଳ । ସେମାନେ ଯେବେ ଏତାଦୃଶ ଜାତୀୟ ସମସ୍ୟାମାନ ସ୍ୱାଧୀନ ଇଚ୍ଛା ଓ ବିବେକବୁଦ୍ଧି ସାହାଯ୍ୟରେ ମୀମାଂସା ନ କରନ୍ତି ତେବେ ଜାତୀୟ ଉନ୍ନତିର ଆଶା ସୁଦୂର ପରାହତ ।"

ଜଳନ୍ଧର ଦେବ ପ୍ରଧାନତଃ ବେଦବିଶ୍ୱାସୀ ଥିଲେ । ବହୁ ବେଦ, ବେଦାଙ୍ଗ, ଉପନିଷଦ, ସ୍ମୃତି, ପୁରାଣ ଅଧ୍ୟୟନ ପୂର୍ବକ ପ୍ରଭୂତ ଜ୍ଞାନ ଲାଭ କରିଥିଲେ । ଅଗାଧ ପାଣ୍ଡିତ୍ୟ ଓ ଅନ୍ୱେଷୀ ଶାସ୍ତ୍ରଜ୍ଞାନର ଶ୍ରେଷ୍ଠ ନିଦର୍ଶନ "ବେଦ ଓ ହିନ୍ଦୁଧର୍ମ (୧୯୩୨-୩୩) । ଏହା ଦ୍ୱାଦଶ ପରିଚ୍ଛେଦ ବିଶିଷ୍ଟ ହୋଇ 'ଉତ୍କଳ-ସାହିତ୍ୟ'ରେ ଏକାଦଶ ଭାଗ ଓ 'ସହକାର' ପତ୍ରିକାରେ ଶେଷଭାଗଟି ଆତ୍ମପ୍ରକାଶ କରି ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କଲା । ବେଦର ହିନ୍ଦୁଧର୍ମ ସହିତ ସମ୍ପର୍କ ଏବଂ ତତ୍‌ସମ୍ବନ୍ଧୀୟ କେତେକ ଅନ୍ଧବିଶ୍ୱାସର ଦୂରୀକରଣ ଉକ୍ତ ପ୍ରବନ୍ଧର ପ୍ରଧାନ ଉପଜୀବ୍ୟ ବସ୍ତୁ । ଏଥିରେ ପରିମାର୍ଜିତ ରୁଚିସମ୍ପନ୍ନ ତଥ୍ୟ ଗ୍ରହଣ ଓ ଜ୍ଞାନାନୁଶୀଳନ, ବଳିଷ୍ଠ ଯୁକ୍ତି, ଉନ୍ନତ ଚିନ୍ତାଧାରା,

ଗଭୀର ଭାବୋଚ୍ଛ୍ୱାସ, ନିର୍ଭୀକ ସ୍ୱାଧୀନମତର ବିମଳ ପ୍ରବାହ ପରିଲକ୍ଷିତ । ଏହା ଓଡ଼ିଆ ସାହିତ୍ୟ ଜଗତରେ ଏକ ଅନବଦ୍ୟ କୃତି । ପ୍ରାବନ୍ଧିକ ଜଳନ୍ଧର ଦେବ ରାଜା ରାମମୋହନ ରାୟଙ୍କ ସଂସ୍ପର୍ଶରେ ଆସି ତାଙ୍କର ସତୀଦାହ ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ 'ରାଜାରାମମୋହନ' ପ୍ରବନ୍ଧର ନିର୍ଯ୍ୟାସ । ଊନବିଂଶ ଶତାବ୍ଦୀର ଶେଷଭାଗରେ ଭୁବନେଶ୍ୱର କାର୍ତ୍ତିକେୟ ବରପ୍ରଦାନ ତଥା ଫଳଲାଭ କେନ୍ଦୁଝର ରାଜ୍ୟରେ ଜନଶ୍ରୁତି ରୂପେ ପ୍ରସିଦ୍ଧ ଯାହାକି 'ଭୁବନେଶ୍ୱର କାର୍ତ୍ତିକେୟ' ପ୍ରବନ୍ଧରେ ରୂପାୟିତ ।

ନର ଓ ନାରୀର ସମ୍ବନ୍ଧ ଅବିଚ୍ଛେଦ୍ୟ । ଏହି ଜାତିର ପରସ୍ପର ସାହାଯ୍ୟ ଓ ସହଯୋଗ ବଳରେ ସାମାଜିକ ରାଜନୈତିକ ଆଧ୍ୟାତ୍ମିକ ତଥା ସାଂସ୍କୃତିକ ପରମ୍ପରାର ବିକାଶ ସାଧନ ହିଁ 'ନର ଓ ନାରୀ' ପ୍ରବନ୍ଧର ବିଷୟବସ୍ତୁ ।

ସୃଷ୍ଟି ରହସ୍ୟ ପ୍ରକ୍ରିୟାର ପ୍ରଖ୍ୟାପକ 'ସୃଷ୍ଟି' ପ୍ରବନ୍ଧ ଏବଂ ନାରାୟଣଙ୍କର ତାତ୍ପର୍ଯ୍ୟ ପ୍ରଖ୍ୟାପକ 'ନାରାୟଣ' ପ୍ରବନ୍ଧ 'ଭକ୍ତ-ପ୍ରଦୀପ'ରେ ପ୍ରକାଶିତ ।

ମନୁଷ୍ୟ କପାଳର ହସ୍ତାକ୍ଷର ତଥା ବିଭିନ୍ନ ପ୍ରାଚୀନ ଆକୃତିର ରହସ୍ୟ ପ୍ରକାଶ କରେ "ଆକୃତି ଅନାଦି କାଳରୁ ଅଛି କି ?"

ସାଧାରଣ ଦୃଷ୍ଟିରେ 'ଧର୍ମ' ଯେଉଁ ରୂପରେ ପ୍ରତିଭାତ, ପୁରାଣଧର୍ମଜ୍ଞ ବ୍ୟକ୍ତିଙ୍କ ନିକଟରେ ଭିନ୍ନ ରୂପରେ ପ୍ରକଟିତ । କେଉଁ ଧର୍ମାଶ୍ରୟୀ ବ୍ୟକ୍ତିର ପରସ୍ପର ବିରୋଧଭାବ ହିଁ 'ମତ୍ସ୍ୟାଧାର୍ମିକତା' ଯାହାକି ହିନ୍ଦୁର ସାମାଜିକ ଉନ୍ନତିର ଅନ୍ତରାୟ । ସୁଜଳା ସୁଫଳା ଶସ୍ୟଶ୍ୟାମଳା ଭାରତରେ ଭୌଗୋଳିକ ପରିବେଶ, ଐତିହାସିକ ପୃଷ୍ଠଭୂମି ତଥା ସାଂସ୍କୃତିକ ପରମ୍ପରାର ଏକ ସୂକ୍ଷ୍ମ ଆଭାସ "ଆର୍ଯ୍ୟ ସଂସ୍କୃତିର କି ଏହି ପରିଣତି ?" ଭାରତୀୟ ସଂସ୍କୃତିର ଶ୍ରେଷ୍ଠ କର୍ଣ୍ଣଧାର ବୁଦ୍ଧଦେବଙ୍କ ଅହିଂସା ନୀତି ତଥା ଅଷ୍ଟାଙ୍ଗିକ ସତ୍ୟ ଦିନେ ସମଗ୍ର ଭାରତରେ ପରିବ୍ୟାପ୍ତ ହୋଇ ଜନମାନସକୁ ଅନୁରଞ୍ଜିତ କରିଥିଲା । ତାର ଶ୍ରେଷ୍ଠ ସ୍ମାରକୀ 'ବୁଦ୍ଧ' ପ୍ରବନ୍ଧ ।

'ବୁଦ୍ଧଦେବଙ୍କ ଜନ୍ମସ୍ଥାନ' ସମ୍ପର୍କରେ ତା ୫ । ୫ । ୧୯୨୧ର ଦୈନିକ 'ଆଶା' ପତ୍ରିକାରେ ପ୍ରକାଶିତ ସତ୍ୟନାରାୟଣ ରାଜଗୁରୁଙ୍କ ଭ୍ରମାତ୍ମକ ଧାରଣାର ସଂଶୋଧନ ତଥା ପ୍ରତିବାଦ ସ୍ୱରୂପ ଉକ୍ତିଷ୍ଟ ପ୍ରବନ୍ଧର ଅବତାରଣା ।

ବୈଷ୍ଣବ ତତ୍ତ୍ୱ ସମ୍ବଳିତ 'ସତ୍ୟଂପରଂଧୀମହି' ପ୍ରବନ୍ଧରେ ବିଭିନ୍ନ ବୈଷ୍ଣବ-ସମ୍ପ୍ରଦାୟର (ଅଦ୍ୱୈତବାଦୀ) ସତ୍ୟ ଉଦ୍‌ଘାଟିତ । ଧର୍ମ ସମ୍ବନ୍ଧରେ ପ୍ରାବନ୍ଧିକଙ୍କ ଧାରଣା, "ବହୁ କାଳରୁ ମୋର ଦୃଢ଼ ବିଶ୍ୱାସ ଏହି ଯେ ଯାବତୀୟ ଧର୍ମବିଶ୍ୱାସ ପ୍ରାଚୀନ କାଳର ବିଜ୍ଞ ଲୋକଙ୍କର କଳ୍ପନାପ୍ରସୂତ ।" ବଙ୍ଗୀୟ ମାସିକ ପତ୍ରିକା 'ବସୁମତୀ'ର 'ପ୍ରବାହଣ' ଶୀର୍ଷକ ପ୍ରବନ୍ଧରୁ 'ବ୍ରହ୍ମଜାଲ' ଶୀର୍ଷକ ପ୍ରବନ୍ଧର ଆତ୍ମପ୍ରକାଶ ।

'ଭାଷା ଓ ସାହିତ୍ୟ' ସମ୍ପର୍କୀୟ ନିମ୍ନୋକ୍ତ ପ୍ରବନ୍ଧମାନ ତାଙ୍କର ଗଭୀର ବ୍ୟୁତ୍ପତ୍ତିର ପରିଚାୟକ । 'ଭାଷା' ପ୍ରବନ୍ଧରେ ତାଙ୍କର ଧାରଣା ପରିମାର୍ଜିତ । "ଭାବରାଜ୍ୟ ସଙ୍କୁଚିତ ହେଲେ ହେଁ ଭାଷାର ବିସ୍ତୃତି ଅସମ୍ଭବ । × × × ଯେଉଁ ଜାତି ଯେତିକି ସଭ୍ୟ, ଉନ୍ନତିଶୀଳ ତାର ଭାଷାକୋଷ ସେତିକି ବଡ଼ ।" ଭାଷାଗତ ଦୋଷର ପରିହାର ନିମନ୍ତେ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି । ମହାକବି କାଳିଦାସ ଭାରତୀୟ ସଭ୍ୟତା ତଥା ସଂସ୍କୃତିର ଶ୍ରେଷ୍ଠ ପୃଷ୍ଠପୋଷକ । ତାଙ୍କର 'ମେଘଦୂତ' କାବ୍ୟର ସମାଲୋଚନାତ୍ମକ ଟିପ୍‌ପଣୀ ପ୍ରଦାନରେ ଏକ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଛନ୍ତି ।

"Language is a part of man's Character" ସାହିତ୍ୟିକ ସତ୍ୟନାରାୟଣ ରାଜଗୁରୁଙ୍କ ଗବେଷଣାତ୍ମକ ପ୍ରବନ୍ଧର ପରିପୂରକ ରୂପେ 'ସାହିତ୍ୟ ଓ ଜାତି' (୧୯୨୯) ପ୍ରବନ୍ଧର ପରିପ୍ରକାଶ । ତାଙ୍କର ଭାଷାରେ "ଚରିତ୍ର ବିହୀନ ଶିକ୍ଷା ଆତ୍ମଶ୍ଳାଘା ରୂପେ ପର୍ଯ୍ୟବସିତ ବିଡ଼ମ୍ବକ ଆଶାତୀତ ମାତ୍ର" । ଜାତୀୟ ଅଭ୍ୟୁତ୍ଥାନ ନିମନ୍ତେ ନୈତିକବଳର ଆବଶ୍ୟକତା ତଥା ଜାତୀୟ ଚରିତ୍ର ଗଠନ ନିମନ୍ତେ ତାଙ୍କର ଆନ୍ତରିକତା ଏଥିରେ ପ୍ରକଟିତ ।

୧୯୩୨-୩୩ ସାଲ ଆଡ଼କୁ 'ସବୁଜ-ସାହିତ୍ୟ'ର ଅପ୍ରତିହତ ପ୍ରଭାବ ସାହିତ୍ୟିକଙ୍କୁ ଆକୃଷ୍ଟ କରିଥିଲା । ଶଶିଭୂଷଣ ରାୟ ଓ ହରିହର ମହାପାତ୍ରଙ୍କ ପ୍ରବନ୍ଧରେ ସାହିତ୍ୟଗତ ତଥ୍ୟ ଆଲୋଡ଼ନ ସୃଷ୍ଟି କଲା । ତେଣୁ ତାର ପ୍ରତିକ୍ରିୟା ସ୍ୱରୂପ ଜଳନ୍ଧରଦେବ "ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ସମ୍ବନ୍ଧେ ଦୁଇ ଚାରି କଥା" ଶୀର୍ଷକ ପ୍ରବନ୍ଧ ରଚନା କଲେ । ଦୃଷ୍ଟ ପ୍ରବନ୍ଧରେ ସାହିତ୍ୟର ସଂଜ୍ଞା, ସ୍ୱରୂପ ପ୍ରଭୃତି ପ୍ରସଙ୍ଗ ଉଲ୍ଲିଖିତ । "କବିମାନେ ହିଁ ନିଜ ନିଜର ରଚନାରେ ଭାବପ୍ରକାଶର ବୈଚିତ୍ର୍ୟ ରକ୍ଷା କରିବାକୁ ଚେଷ୍ଟା କରିଥାନ୍ତି । କାରଣ ପ୍ରତିଭାର ତାରତମ୍ୟ ହେତୁ କବିତାର ତାରତମ୍ୟ ଘଟେ । ଲେଖକ ଜନସାଧାରଣଙ୍କ ପ୍ରକୃତ ଭୃତ୍ୟ, ସେହି ହେତୁ ତାର ଶିକ୍ଷା ଓ ଉନ୍ନତ ।"

କଟକର 'ଉତ୍କଳ-ସାହିତ୍ୟ-ସମାଜ'ର ଆନୁକୂଲ୍ୟରେ ଅନୁଷ୍ଠିତ ଅଷ୍ଟାବିଂଶ ବାର୍ଷିକ ଅଧିବେଶନରେ ସଭାପତି ଅଭିଭାଷଣ ଅତ୍ୟନ୍ତ ଉଚ୍ଚକୋଟୀର । "ମାତୃପୂଜା ନିମନ୍ତେ ନିର୍ମଳ ମନ ହିଁ ଗଙ୍ଗାଜଳ । ସାହିତ୍ୟ ଓ ସଭ୍ୟତା ପରସ୍ପର ପରିପୂରକ ।" ସାହିତ୍ୟିକ ବନ୍ଧୁମାନଙ୍କ ମଧ୍ୟରେ ଥିବା ଯାବତୀୟ ମନୋମାଳିନ୍ୟ ଦୂର କରିବା ନିମନ୍ତେ ତାଙ୍କର କାତରୋକ୍ତି ବିଶାଳ-ପ୍ରାଣତାର ପରିଚାୟକ । 'ପ୍ରାଚୀସମିତି'ର ପ୍ରଶଂସନୀୟ କାର୍ଯ୍ୟ, ଉତ୍କଳ ସାହିତ୍ୟର ପ୍ରତିଷ୍ଠା ଓ ପ୍ରଭାବ, ମାତୃଭାଷା ପ୍ରତି ତାଙ୍କର ଗଭୀର ଅନୁରାଗ ଏଥିରେ ରୂପାୟିତ ।

ଜଳନ୍ଧରଦେବ "ଓଡ଼ିଶାର ରାଜଧାନୀ ବିଦ୍ୟାନଗରୀ କଟକ"ରେ ଅନୁଷ୍ଠିତ ସାହିତ୍ୟ-ସଭାରେ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟର ଅବତାରଣା କଲେ ଯାହା କି ସାହିତ୍ୟର ଉନ୍ନତି ବିଧାନରେ ସହାୟକ । ବିଭିନ୍ନ ପତ୍ରପତ୍ରିକାର ପ୍ରଭାବ, ମୁଦ୍ରାଯନ୍ତ୍ରର ଆବଶ୍ୟକତା, ସବୁଜ-ସାହିତ୍ୟ-ସମିତିର କ୍ରାନ୍ତିକାରୀ ପ୍ରଭାବ ପ୍ରଭୃତି ପ୍ରସଙ୍ଗ ସାହିତ୍ୟିକମାନଙ୍କର ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ କରେ ।

ରାଧାନାଥଙ୍କ 'ପାର୍ବତୀ' କାବ୍ୟ ଏକ ବ୍ୟତିକ୍ରମ ବୋଲି ମନେହୁଏ । ତେଣୁ 'ରାଧାନାଥଙ୍କ କାବ୍ୟରେ ନାରୀ' ଏକ ଉଚ୍ଚକୋଟୀର ସମାଲୋଚନାତ୍ମକ ପ୍ରବନ୍ଧ । ବାରିପଦାରେ ଅନୁଷ୍ଠିତ ସାହିତ୍ୟ-ସଭାରେ ଶିଶୁ-ସାହିତ୍ୟ-ସମାଜ ଆନୁକୂଲ୍ୟରେ ପ୍ରଥମ ବାର୍ଷିକ ଅଧିବେଶନରେ ସଭାପତି ରୂପେ 'ସାହିତ୍ୟିକ-ଅଭିଭାଷଣ' ଏକ ମନୋଜ୍ଞ ସାହିତ୍ୟିକ କୃତି । ବିଂଶ ଶତାବ୍ଦୀର କବିମାନଙ୍କୁ ଉପଲକ୍ଷ୍ୟ କରି କହିଥିଲେ, "ବରଂ ଏ ଦେଶର ଯୁବକମାନେ ମାତୃଭାଷାର ମୁଖୋଜ୍ଜ୍ୱଳ କରିବାକୁ ଅଣ୍ଟାଭିଡ଼ି ଲାଗିଥିବାର ଦେଖିଲେ ମନରେ ଅପାର ଆନନ୍ଦ ଜାତ ହୁଏ ।"

ଶିକ୍ଷା ମନୁଷ୍ୟର ଏକ ଅପରିହାର୍ଯ୍ୟ ପ୍ରବୃତ୍ତି । ଭାରତୀୟ ଶିକ୍ଷାପଦ୍ଧତିର କ୍ରମବିକାଶଧାରା, ଶିକ୍ଷାର ସ୍ୱରୂପ, ସଂସ୍କୃତ ଭାଷାର ସ୍ୱରୂପ, ରାଷ୍ଟ୍ରଭାଷାର ଲକ୍ଷଣ ଆଦି ପ୍ରସଙ୍ଗ "ଶିକ୍ଷାପଦ୍ଧତି" (୧୯୩୫) ପ୍ରବନ୍ଧରେ ଉଲ୍ଲିଖିତ ।

ଉତ୍କଳ-ସାହିତ୍ୟ ଜଗତରେ ପ୍ରାବନ୍ଧିକ ବିଶ୍ୱନାଥ କରଙ୍କ ସାହିତ୍ୟିକ ଅବଦାନ ସର୍ବଦା ଅବିସ୍ମରଣୀୟ । ତାଙ୍କର ସମ୍ପାଦନାରେ ପ୍ରକାଶିତ 'ଉତ୍କଳ-ସାହିତ୍ୟ' ମାସିକ ପତ୍ରିକାରେ ଜଳନ୍ଧର ଦେବଙ୍କ କୃତି ପ୍ରକାଶନ

ଦୃଷ୍ଟିରୁ ଉଭୟଙ୍କ ମଧ୍ୟରେ ନିବିଡ଼ ବନ୍ଧୁତା ଥିଲା । ତାଙ୍କର ତିରୋଧାନ (ତା ୧୯-୧୦-୧୯୩୪) ରେ ଜଳନ୍ଧର ଦେବଙ୍କ ପ୍ରାଣରେ ଦାରୁଣ ଆଘାତ ଲାଗିଲା । ବୈଦିକ ଯୁଗରେ ସମାଜସଂସ୍କାରପନ୍ଥୀ ଜାତି 'ଅର୍ଯ୍ୟ' ତାର ବିରୋଧୀ 'ବ୍ରାତ୍ୟ' ନାମରେ ଅଭିହିତ । ସାମାଜିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ 'ସାହିତ୍ୟର ଗତି ଓ ଅଭିବ୍ୟକ୍ତି' ପ୍ରବନ୍ଧ ।

ସଂସ୍କାର ପ୍ରୟାସୀ ଜଳନ୍ଧର ଦେବଙ୍କ ସମାଜ ସଂସ୍କାର ପରିକଳ୍ପନାର ସଂକେତ ବହନ କରେ 'ଜାତି ଓ ସମାଜ' ଶ୍ରେଣୀ ଅନ୍ତର୍ଭୁକ୍ତ ପ୍ରବନ୍ଧ "ଭାରତୀୟ ରମଣୀମାନଙ୍କର ଦୁରବସ୍ଥା" (ତା ୬-୧୧-୧୮୯୫) ।

ଜଳନ୍ଧର ଦେବ ନିଜେ ନିଜେ କଥା ହେବାର ଖୁବ୍ ଅଭ୍ୟାସ ଥିଲା । ତେଣୁ କର୍ମକ୍ଷମ ଅବସ୍ଥାରେ ପତ୍ରପତ୍ରିକାର ପୃଷ୍ଠା ଆଲୋଡ଼ନ ଓ ସ୍ୱୀୟ ମତ ପ୍ରଦାନ ଏକ ବିଶିଷ୍ଟ କାର୍ଯ୍ୟ । ଏହା ହିଁ 'ସ୍ୱଗତ' । ତାଙ୍କର ଦୁଇଟି ସ୍ୱଗତରେ ସୁଚିନ୍ତିତ ମତ ପ୍ରକାଶିତ ।

'ବର୍ଣ୍ଣ ଓ ଜାତି' ସମସ୍ୟା ଅତି ଗହନ । ତିନୋଟି ପର୍ଯ୍ୟାୟରେ ଧାରାବାହିକ ରୂପେ ଏହା ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ! ଏହାହିଁ 'ବେଦ ଓ ହିନ୍ଦୁଧର୍ମର' ଉପସଂହାର ବୋଲି ମନେହୁଏ । ଆଧୁନିକ ଯୁଗରେ ଜାତିପିତା ମହାତ୍ମାଗାନ୍ଧିଙ୍କ ଚିନ୍ତାଧାରା କେତେକ ଏଥିରେ ରୂପାୟିତ ।

ଭାରତର ଜାତିଭେଦ ପ୍ରଥା ଏକ ବିରାଟ ତଥା କଠିନ ସମସ୍ୟା । ତେଣୁ ପ୍ରକାଶ କଲେ, "ବର୍ଣ୍ଣାଶ୍ରମ-ଧର୍ମ ଓ ଜାତିଭେଦ ଯେ ଭାରତବାସୀର ସମୂହ ଅନିଷ୍ଟର ହେତୁ ଏହା କାହାକୁ ଅଜଣା ? ମାତ୍ର ଅନ୍ଧବିଶ୍ୱାସ ଓ ଚିରାଚରିତ ପ୍ରଥାର ମୋହ ତ୍ୟାଗ କରିବାକୁ କେହି ରାଜି ନୁହଁନ୍ତି ।" ମହାତ୍ମାଗାନ୍ଧିଙ୍କର ଜାତିଭେଦ ପ୍ରଥା ବିଲୋପ ଉଦ୍ୟମ, ଅସ୍ପୃଶ୍ୟ ଜାତିର ଉନ୍ନତିକଳ୍ପେ ଏ ପ୍ରକାର "କଠିନ ସମସ୍ୟା"ର ସମାଧାନ ନିମନ୍ତେ ତାଙ୍କର ଆତୁରତା ଆଦି ପ୍ରସଙ୍ଗ ଉଲ୍ଲିଖିତ ।

ଶୂଦ୍ରଜାତିର ଲକ୍ଷଣ ତଥା ଶୁଣିହିଁ ସ୍ୱାଦ ପ୍ରସଙ୍ଗରେ 'ମନୁସଂହିତା', 'ମହାଭାରତ', ଶ୍ରୀମଦ୍ ଭଗବତ ଗୀତା' ପ୍ରଭୃତି ଶାସ୍ତ୍ରରୁ ଆହରଣ ପୂର୍ବକ 'ଶୂଦ୍ରଜାତି କେଉଁଠା ?' ପ୍ରବନ୍ଧରେ ତାତ୍ତ୍ୱିକ ଆଲୋଚନା ପ୍ରଦାନ କରିଛନ୍ତି ।

ବିଜ୍ଞାନପ୍ରିୟ ରାଜକବି ସଚ୍ଚିଦାନନ୍ଦଙ୍କ ସମ୍ପର୍କରେ ରହି 'ମାନମନ୍ଦିର' (Observatory) ଓ 'ଦୂରବୀକ୍ଷଣ ଯନ୍ତ୍ର' ପ୍ରଭୃତିର ବ୍ୟବହାର ଓ ତଥ୍ୟାନୁଶୀଳନ ତାଙ୍କର ଅତ୍ୟନ୍ତ ପ୍ରିୟ କାର୍ଯ୍ୟ ଥିଲା । ତେଣୁ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ତାଙ୍କର ପ୍ରବେଶ ଅତ୍ୟନ୍ତ ନିବିଡ଼ ଥିଲା । ତତ୍ଲବ୍ଧ ଜ୍ଞାନ ସାତଟି ପ୍ରବନ୍ଧରେ ସନ୍ନିବେଶିତ ।

ବାମଣ୍ଡାରୁ ପ୍ରକାଶିତ 'ସମ୍ବଲପୁର-ହିତୈଷିଣୀ' ସାପ୍ତାହିକ ପତ୍ରିକାର ୧୮୯୭ ମସିହା ସେପ୍ଟେମ୍ବର ସଂଖ୍ୟାରେ ପ୍ରକାଶିତ 'ଗ୍ରହଣ-ବିଗ୍ରହ' ଏକ ତତ୍ତ୍ୱଦର୍ଶକ ପ୍ରବନ୍ଧ । ଗ୍ରହନକ୍ଷତ୍ରାଦିର ଗତି ଓ ତାର ପ୍ରଭାବ, ଗ୍ରହଣରେ କାରଣ ତଥା ଗ୍ରହଣ ସମ୍ପର୍କରେ କେତେକ ମୌଳିକ ତଥ୍ୟ ଜନସମାଜକୁ ବିଶେଷ ରୂପେ ପ୍ରଭାବିତ କରିଛି

ପୃଥିବୀରେ ତଥା ଭାରତରେ ସାତଟି 'ବାର' ପ୍ରଚଳିତ । ତାର ଉତ୍ପତ୍ତି, କ୍ରମବିକାଶ ପ୍ରଭୃତି କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟର ଉନ୍ମେଷ ପ୍ରବନ୍ଧଟିକୁ ସୁଖପାଠ୍ୟ କରିଅଛି ।

୧୮୬୭ ସାଲରେ 'Northern Crown' ନାମକ ନକ୍ଷତ୍ରପୁଞ୍ଜ, ୧୯୦୧ରେ 'ପର୍ସିଅସ' ନାମକ ନୀହାରିକା, ଧୂମକେତୁର ପ୍ରଭାବ, ଉଲ୍କାପାତ ଓ ତାର କାରଣ ଆଦି କେତେକ ଜ୍ୟୋତିର୍ବିଜ୍ଞାନ ସମ୍ବଳିତ ତଥ୍ୟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ସଂପ୍ରସାରିତ କରେ "ଶକ୍ତି-ସମନ୍ୱିତ ବସ୍ତୁ ସମଷ୍ଟି-ଜଗତ୍' ପ୍ରବନ୍ଧ (୧୯୨୫) ।

ଜ୍ୟୋତିର୍ବିଦ୍ୟା ଯୁଗେ ଯୁଗେ ନୂତନତ୍ୱ ପ୍ରଦାନ କରେ । ତାର ଯୁଗାନ୍ତକାରୀ ପ୍ରଭାବକୁ ପ୍ରକଟିତ କରେ "ଜ୍ୟୋତିର୍ବିଦ୍ୟାର ଜୟ" ପ୍ରବନ୍ଧ (୧୯୩୧) ।

ଓଡ଼ିଆ ସାହିତ୍ୟ ଜଗତରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପ୍ରଣୀତ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ଏକ ଅମ୍ଳାନକୃତି । ଏଥିରେ ପ୍ରକାଶିତ 'ନକ୍ଷତ୍ର' ସମ୍ପର୍କୀୟ କେତେକ ଭ୍ରମାତ୍ମକ ଧାରଣାର ସଂଶୋଧନ ନିମିତ୍ତ 'ନକ୍ଷତ୍ର' ପ୍ରବନ୍ଧର ପରିପ୍ରକାଶ (୧୯୩୩) । ତାଙ୍କର ବ୍ୟକ୍ତିଗତ ଜୀବନର ଅନୁଭୂତିର ନିଛକ ପ୍ରତିଫଳନ "ଗୋଟିଏ ମୋର ବହୁ କାଳର ଅଭ୍ୟାସ, ଭଲ କି ମନ୍ଦ ତାହା ମୁଁ କହିପାରୁ ନାହିଁ । ବିଜ୍ଞାନ ସମ୍ବନ୍ଧୀୟ, ଜମିଦାରୀ ସମ୍ବନ୍ଧୀୟ ଏବଂ ଜ୍ୟୋତିର୍ବିଦ୍ୟା ସମ୍ବନ୍ଧୀୟ ପ୍ରବନ୍ଧ ଉପରେ ନଜର ପ୍ରଥମରେ ପଡ଼େ ଏବଂ ତାହା ପାଠ କରିବାର ଲୋଭ ସମ୍ବରଣ କରିପାରେ ନାହିଁ ।"

କେତେକ ବୈଦିକ ପୌରାଣିକ ତଥା ବୈଜ୍ଞାନିକ ତଥ୍ୟର ପରିପ୍ରକାଶକ 'ସୂର୍ଯ୍ୟ' ପ୍ରବନ୍ଧ (୧ ଓ ')। ପୌରାଣିକ ଉପାଖ୍ୟାନର ବିମଳ ପ୍ରଭାବ 'ଧ୍ରୁବ' ପ୍ରବନ୍ଧରେ ପରିଲକ୍ଷିତ ହେଲେହେଁ, ବୈଜ୍ଞାନିକ ତଥ୍ୟ ସୁସ୍ପଷ୍ଟ ।

ବୈଦିକ ସାହିତ୍ୟ ସାଧାରଣର ଦୁର୍ବୋଧ ହେତୁ ପୁରାଣ ସାହିତ୍ୟର ସୃଷ୍ଟି । ଏଥିରେ ତାଙ୍କର ସାତୋଟି ପ୍ରବନ୍ଧ ଅନ୍ତର୍ଭୁକ୍ତ ।

ଆଧ୍ୟାତ୍ମିକ ଜଗତରେ 'ଶ୍ରୀମଦ୍ ଭଗବଦ୍‌ଗୀତା' (୧୯୧୫) ଏକ ଅଦ୍ୱିତୀୟ କୃତି । ଏହାର ଆଧ୍ୟାତ୍ମିକ ରହସ୍ୟ ଜନସମାଜକୁ ଉଚ୍ଚାଦର୍ଶରେ ଅନୁପ୍ରାଣିତ କରି ଜାତୀୟ ପ୍ରଗତି ବିଧାନ କରେ ।

'ବେଦ' ପରି ସର୍ବପ୍ରାଚୀନ ଗ୍ରନ୍ଥ 'ମହାଭାରତ' ଏକ ସର୍ବବୃହତ୍ ଗ୍ରନ୍ଥ । ଏହାର ପ୍ରଭାବ ଜନ-ସମାଜକୁ ବିଶେଷ ରୂପେ ପ୍ରଭାବିତ କରେ, ତେଣୁ [illegible]ଲେ ।

"ଧର୍ମଦ୍ୱେଷୀ ଭାରତ ପ୍ରବନ୍ଧ ଲେଖାର ପୁରସ୍କାର ସ୍ୱରୂପ କେତେକ ପାଠକଙ୍କର ବିଧର୍ମୀ ଆଖ୍ୟା ଲାଭ କରିବୁଁ । ଯାହା ପ୍ରକୃତ ସତ୍ୟ ତାହା କର୍ତ୍ତବ୍ୟ – ସ୍ୱାଧୀନ ଚିନ୍ତାରେ ବାଧା ନାହିଁ ।" ତାଙ୍କର ପାଞ୍ଚଟି ପର୍ଯ୍ୟାୟରେ ବିଭିନ୍ନ ସାରଗର୍ଭକ ତଥ୍ୟର ଅବତାରଣା ପାଣ୍ଡିତ୍ୟର ପରିଚୟ ପ୍ରଦାନ କରେ ।

'ରାମାୟଣ' ହିନ୍ଦୁର ଶ୍ରେଷ୍ଠ ଧର୍ମଗ୍ରନ୍ଥ । 'ରାମାୟଣ' ଓ 'ମନୁସଂହିତା'ର ତୁଳନା, ରଚନାକାଳ ପ୍ରଭୃତି ତଥ୍ୟର ବିଶ୍ଳେଷଣ ଭାରତୀୟ ରାଜନୈତିକ, ଆଧ୍ୟାତ୍ମିକ ତଥା ସାମାଜିକ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କଲା ।

"ଗୀତା ସର୍ବଶାସ୍ତ୍ରଭୂତା ବିଶୁଦ୍ଧା ସା ବିଶିଷ୍ୟତେ ।"

ବେଦାନ୍ତସାର-ନିହିତ ତତ୍ତ୍ୱ, ଦଶମ ଓ ଏକାଦଶ ଅଧ୍ୟାୟର ବିଶ୍ୱରୂପ ଦର୍ଶନର ସାରମର୍ମ 'ଗୀତା' ପ୍ରବନ୍ଧର ଉପଜୀବ୍ୟ ବସ୍ତୁ ।

କେତେକ ପ୍ରବୃତ୍ତି ଓ ନିବୃତ୍ତିମୂଳକ ଉପଦେଶ ତଥା ତଥ୍ୟ 'ଯୁଦ୍ଧ ଓ ଗୀତା' ପ୍ରବନ୍ଧର ସଂଶୟ ମୋଚନ କରିଥାଏ । ସ୍ୱାଧୀନଚେତା ପ୍ରାବନ୍ଧିକ ଜଳନ୍ଧର ଦେବ ଜଣେ ଉଚ୍ଚକୋଟୀର ଚିନ୍ତାଶୀଳ ତଥା ଭାବୁକ । ତାଙ୍କର ନବୀନ, ସ୍ୱତନ୍ତ୍ରବାଦୀ ଚିନ୍ତାଧାରାର ସ୍ୱଚ୍ଛଳ ପ୍ରବାହ 'ସ୍ୱାଧୀନ ଚିନ୍ତା' (୧୯୨୦-୪୦) ସନ୍ଦର୍ଭରେ ପରିଲକ୍ଷିତ । ତେଣୁ ବିଭିନ୍ନ ପ୍ରସଙ୍ଗ ଉପରେ ଆଧାରିତ ବୌଦ୍ଧିକ ଚିନ୍ତାରେ ସ୍ଥିତପ୍ରଜ୍ଞ ଲେଖନୀ ରୂପପ୍ରଦାନ କରିବାରେ ସିଦ୍ଧହସ୍ତତା ପ୍ରଦର୍ଶନ କରିପାରିଛି ।

ଦାର୍ଶନିକ ତଥ୍ୟ ସମ୍ବଳିତ 'ମନ'ପ୍ରବନ୍ଧ ମନର ଗଠନବିଧି ତଥା କ୍ରିୟାକଳାପ ଉପରେ ଆଧାରିତ । ଭାରତୀୟ ହିନ୍ଦୁ ଦର୍ଶନରେ କର୍ମ-ଜିଜ୍ଞାସା, ଧର୍ମ-ଜିଜ୍ଞାସା ତଥା ବ୍ରହ୍ମ-ଜିଜ୍ଞାସାର ସ୍ୱରୂପ ନିର୍ଦ୍ଧାରଣ କରେ 'ଜିଜ୍ଞାସା' ପ୍ରବନ୍ଧ । 'The Gospel of Buddha' ପୁସ୍ତକରୁ ଅନୂଦିତ ତଥ୍ୟ 'ଧର୍ମପଦ' ଯେପରିକି ପ୍ରୀତିପୂର୍ଣ୍ଣ ଉପଦେଶରେ ଉପାସିତ ।

ତାଙ୍କର କେତେକ ପ୍ରବନ୍ଧ ବିବିଧ-ତଥ୍ୟ ଉପରେ ଆଧାରିତ । 'ଭାରତର ଇତିହାସ' ଅତୀତ ଭାରତର ସୂକ୍ଷ୍ମାଭାସ ମାତ୍ର ।

୧୯୧୫-୧୬ ସାଲରେ ବିହାରରେ ସଂଘଟିତ ଭୂମିକମ୍ପର ବିବରଣୀ 'ଭୂମିକମ୍ପ' ପ୍ରବନ୍ଧରେ ରୂପାୟିତ । 'ଅଦ୍ୱିତୀୟ ବାଦର ଅଭାବ' (୧୯୩୯)ରେ ବିବର୍ତ୍ତନ ଧାରା ତଥା ତାର ପରିଣତି "ମନୁଷ୍ୟର ଭୂତ ଅତିକ୍ରାନ୍ତ, ବର୍ତ୍ତମାନ ସ୍ଥିତ ଏବଂ ଭବିଷ୍ୟତ ଅନିଶ୍ଚିତ ।" ପ୍ରଭୃତି କେତେକ ଦାର୍ଶନିକ ତଥ୍ୟ ଧ୍ୱନିତ ।

କୃଷିର ଉପାଦେୟତା ଗୁଣ ଆଜି ପ୍ରାୟ ସମସ୍ତେ ଉପଲବ୍‌ଧି କରନ୍ତି । ପ୍ରାଚୀନ ପଦ୍ଧତିର ବିଶ୍ଳେଷଣ କରେ 'କୃଷି' ପ୍ରବନ୍ଧ (୧୯୩୬)

ସମବୃତ୍ତି ସଂପନ୍ନ ବ୍ୟକ୍ତିର ଆଳାପ ସେହି ବ୍ୟକ୍ତିର ସ୍ୱତଃ ପ୍ରଥମ ସାକ୍ଷାତରେ ସେହି ବୃତ୍ତି ସମ୍ପର୍କରେ ହିଁ ହୋଇଥାଏ । ସେ କୃଷିପ୍ରିୟ ହେତୁ ପ୍ରକାଶ କଲେ, "ମୁଁ ଚଷା, ଏଣୁ ଚଷା ଦେଖିଲେ ସେ ବଡ଼ ଲୋକ ହେଉ ବା ସାମାନ୍ୟ ମୂଲିଆ ହେଉ ତା ସଙ୍ଗରେ ଦୁଇପଦ କଥା ହେବାର ଅଭ୍ୟାସ ଅଛି । ଏଥି ଦ୍ୱାରା ଅନେକ ଶିକ୍ଷା ମିଳେ ।" "କୃଷିର୍ମେଧା କୃଷିର୍ଧନ୍ୟା ଜନ୍ତୁନାଂ ଜୀବନଃ କୃଷିଃ" ଉକ୍ତିର ଚରମ ଅଭିବ୍ୟକ୍ତି ଲାଭ କରିଛି 'କୃଷି' (୧୯୪୭) ପ୍ରବନ୍ଧରେ ।

ଜଳନ୍ଧର ଦେବ ବିଭିନ୍ନ କାର୍ଯ୍ୟରେ ରତ ଥାଇ ମଧ୍ୟ କୃଷିକାର୍ଯ୍ୟରେ ଗଭୀର ମନୋନିବେଶ କରିପାରୁଥିଲେ । ଏତଦ୍‌ବ୍ୟତୀତ ଇତର ପ୍ରାଣୀର ସେବା ତାଙ୍କର ଶ୍ରେଷ୍ଠ କର୍ମ ଥିଲା । ଋତୁ ପର୍ଯ୍ୟାୟରେ ବିଭିନ୍ନ ରବିଫସଲ ଚାଷ କରିବା ତାଙ୍କ ଆଦର୍ଶ କୃଷକ ଜୀବନର ପରିଚାୟକ । ବିଭିନ୍ନ ଫସଲର ଚାଷ ପ୍ରଣାଳୀ କୃଷିପ୍ରିୟ ଲୋକଙ୍କୁ ଅବଗତ କରାଇବା 'କୃଷି' (୧୯୪୮) ପ୍ରବନ୍ଧର ପ୍ରଧାନ ଆଭିମୁଖ୍ୟ ।

'ମା', 'ମାତୃଭୂମି' ଓ 'ମୃତ୍ୟୁ' ସର୍ବଦା ସତ୍ୟ । ତେଣୁ ଏହି ତିନୋଟି ସତ୍ୟ ଉପରେ ଆଧାରିତ 'ତିନୋଟି ସତ୍ୟ' ପ୍ରବନ୍ଧ ତାଙ୍କ ଗଭୀର ଜ୍ଞାନର ନିଦର୍ଶନ ।

ଉପର୍ଯ୍ୟୁକ୍ତ ପ୍ରବନ୍ଧମାନଙ୍କ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଜଳନ୍ଧର ଦେବ ଜଣେ ସ୍ୱାଧୀନ-ଚେତା, ସ୍ୱତନ୍ତ୍ରବାଦୀ ତଥା ଉଚ୍ଚକୋଟୀର ପ୍ରାବନ୍ଧିକ ।

ଉପସଂହାରରେ ଏତିକି ମାତ୍ର ବକ୍ତବ୍ୟ ଯେ ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ ଜଳନ୍ଧର ଦେବଙ୍କ କୃତିସଂପଦକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ପ୍ରବନ୍ଧଭାଗ ଅନ୍ୟ ବିଭାଗ (ଗଳ୍ପ, ନାଟକ, କବିତା ଆଦି) ଅପେକ୍ଷା ଶୀର୍ଷ ସ୍ଥାନ ଲାଭ କରେ । ପ୍ରବନ୍ଧମାନଙ୍କ ମଧ୍ୟରେ "ବେଦ ଓ ହିନ୍ଦୁ ଧର୍ମ" ପ୍ରବନ୍ଧ ଅନ୍ୟତମ ।

ପ୍ରବନ୍ଧ ତୁଳନାରେ ଗଳ୍ପ ସଂଖ୍ୟା କମ୍ । ଗଳ୍ପଗୁଡ଼ିକର ବିଶେଷତ୍ୱ ଏହି ଯେ, ଆଦିବାସୀ ଅର୍ଥାତ୍ ନିମ୍ନ ସ୍ତରସ୍ଥ ଜାତିର ଦୈନନ୍ଦିନ କାର୍ଯ୍ୟାବଳୀକୁ ଲୋକଲୋଚନକୁ ଆଣି ସମାଜସଂସ୍କାର ପରିକଳ୍ପନା କାର୍ଯ୍ୟକାରୀ କରିବାରେ ଚେଷ୍ଟିତ । ସ୍ୱଳ୍ପ ଏକାଙ୍କିକା ନାଟକଗୁଡ଼ିକ ଐତିହାସିକ ତଥ୍ୟ ସମ୍ବଳିତ । କବିତା ଆଶାନୁରୂପ ନ ହେଲେହେଁ ଭାବୋଦ୍ଦୀପକ ।

ସମାଜ ସହିତ ସାହିତ୍ୟର ସମ୍ପର୍କ ଅତି ନିବିଡ଼ । ତେଣୁ ତାଙ୍କ ସାହିତ୍ୟରେ ସାମାଜିକ ରୀତି ନୀତିର ପୂର୍ଣ୍ଣ ପ୍ରତିଫଳନ ପ୍ରତିଭାତ । ସେ ଉଚ୍ଚଶିକ୍ଷା ଲାଭ କରି ନ ଥିଲେହେଁ ପ୍ରବେଶିକା ପର୍ଯ୍ୟନ୍ତ ପଢିକରି ଅଗାଧ ପାଣ୍ଡିତ୍ୟ ତଥା ଗଭୀର ଶାସ୍ତ୍ରଜ୍ଞାନର ଅଧିକାରୀ ହୋଇପାରିଥିଲେ । ଜଟିଳ ପ୍ରଶାସନିକ କ୍ଷେତ୍ରରେ ଥାଇ ମଧ୍ୟ କର୍ମ ଜୀବନରେ ଯେ ଯେ ସାହିତ୍ୟିକ ବ୍ୟୁତ୍ପତ୍ତି ଲାଭ କରିପାରିଥିଲେ ତାହା ତାଙ୍କ ପ୍ରକୃଷ୍ଟ ମନନ୍ତ୍ରର ପରିଚାୟକ । ରାଜକୀୟ ପରିବେଶରେ ଥାଇ ମଧ୍ୟ ଭୋଗବିଳାସ ପ୍ରତି ଆସକ୍ତ ନ ଥିଲେ । ତେଣୁ ଦୈନନ୍ଦିନ ଜୀବନରେ ଗୃହକାର୍ଯ୍ୟରୁ ଆରମ୍ଭ କରି ପ୍ରଶାସନିକ କାର୍ଯ୍ୟ ପର୍ଯ୍ୟନ୍ତ ନିଜେ ହିଁ ତତ୍ତ୍ୱାବଧାନ କରୁଥିଲେ । ଏହାହିଁ ତାଙ୍କ କର୍ମଠ ନିରଳସ ଜୀବନର ଶ୍ରେଷ୍ଠ ନିଦର୍ଶନ । ତେଣୁ ବୋଲିବା ବାହୁଲ୍ୟ ଯେ ଜଳନ୍ଧର ଦେବଙ୍କ ଜୀବନଦର୍ଶନ ତଥା ଆଦର୍ଶ ଊନବିଂଶ ଶତାବ୍ଦୀର ପାଶ୍ଚାତ୍ୟ ସାହିତ୍ୟିକ 'ରସ୍କିନ୍'ଙ୍କର (୧୮୧୯-୧୯୦୦) ସାଦୃଶ୍ୟ ରକ୍ଷା କରେ ।

ଜଳନ୍ଧର ଦେବ ଯେ ଏକାଧାରରେ ବହୁ ଗୁଣର ଜଣେ ବିଶିଷ୍ଟ ମୂର୍ତ୍ତିମନ୍ତ ଅବତାର ଅର୍ଥାତ୍ କେବଳ ସାହିତ୍ୟିକ ବ୍ୟକ୍ତିବିଶେଷ ନୁହନ୍ତି ଏକ ମହାନ ଜାତୀୟ ଅନୁଷ୍ଠାନ, ଏଥିରେ ଦ୍ୱିରୁକ୍ତି ନାହିଁ ।

ଏହି ପରିପ୍ରେକ୍ଷୀରେ ବିଚାର କଲେ ଜଣାଯାଏ ଯେ ତାଙ୍କ ପ୍ରଣୀତ ରଚନାକୃତି-ସମ୍ପଦ ତଥା ଜଳନ୍ଧର ଦେବ ରଚନାବଳୀ" (ପ୍ରବନ୍ଧଭାଗ) ଓଡ଼ିଆ ସାହିତ୍ୟ ଜଗତର ଏକ ଅନବଦ୍ୟ ଅକ୍ଷୟ କୀର୍ତ୍ତି । ଅବଶ୍ୟ ଏଥିରେ କେବଳ 'ଧର୍ମ ଓ ସଂସ୍କୃତି' ଏବଂ "ଭାଷା ଓ ସାହିତ୍ୟ" ବିଭାଗଦ୍ୱୟ ସନ୍ନିବେଶିତ ।

ରାମଚନ୍ଦ୍ର ବ୍ରହ୍ମା

# ସୂଚିପତ୍ର

# ଭାଷା

ଯଦ୍ଦ୍ୱାରା ମନୁଷ୍ୟ ନିଜ ହୃଦଗତ ଭାବ ବ୍ୟକ୍ତ କରିପାରେ ତାହାହିଁ ଭାଷା । ଭାଷା ଦୁଇ ପ୍ରକାର—କଥିତ ଭାଷା ଓ ଲିଖିତ ଭାଷା । ସର୍ବସାଧାରଣ ଯେଉଁ ପ୍ରଚଳିତ ଭାଷା କହନ୍ତି ତାହା କଥିତ ଭାଷା; ପରିମାର୍ଜିତ ଭାଷା ଲିଖିତ ଭାଷା । ଯେଉଁ ଭାଷାରେ ସୂତ୍ରବାଦ ଲିଖିତ ହୋଇ ଲେଖକର ଭାବ ବ୍ୟକ୍ତ ହୁଏ ଏବଂ ପାଠକର ମନ ତୃପ୍ତିଲାଭ କରେ ତାହା ଲିଖିତ ଭାଷା । କଥିତ ଭାଷା ପରିମାର୍ଜିତ ହୋଇ ଲିଖିତ ଭାଷା ହୋଇଅଛି ସତ କିନ୍ତୁ ତହିଁରେ ଭାବବ୍ୟକ୍ତିକାରୀ ଅନେକ ସଂସ୍କୃତ ଓ ଅନ୍ୟ ଭାଷାର ଶବ୍ଦ ମିଶ୍ରିତ ହୋଇଅଛି । ଭାରତବର୍ଷରେ ବି କଥିତ ଲିଖିତ ଭାଷାର ସଂଖ୍ୟା ଅନେକ । ମାତ୍ର କଥିତ ଭାଷା ଅପେକ୍ଷା ଲିଖିତ ଭାଷାର ସଂଖ୍ୟା ଅଳ୍ପ । ଏହା ସ୍ୱାଭାବିକ କଥା । ଦୂରତାର ତାରତମ୍ୟ ଅନୁସାରେ କଥିତ ଭାଷାର ତାରତମ୍ୟ ଘଟେ; ଏହା ପ୍ରମାଣସିଦ୍ଧ, ପ୍ରତ୍ୟକ୍ଷସିଦ୍ଧ ।

ଆମମାନଙ୍କର ମାତୃଭାଷା ଓଡ଼ିଆ ଗୋଟିଏ ପ୍ରସିଦ୍ଧ ଭାଷା, ଏଥିରେ ସନ୍ଦେହ ନାହିଁ । ଭାରତରେ ପ୍ରଚଳିତ ଅନେକ ଭାଷା ଅପେକ୍ଷା ଓଡ଼ିଆ ଭାଷାର ଆସନ ଯେ ଉଚ୍ଚରେ ଏଥିରେ କେହି ଦ୍ୱିରୁକ୍ତି କରିପାରିବେ ନାହିଁ । ଭାଷା ଭିତରେ ଏହାର ବୈଶିଷ୍ଟ୍ୟ ଥିଲା, ଏବେ ମଧ୍ୟ ବଢ଼ୁଛି । ପଦ୍ୟ-ସାହିତ୍ୟରେ ଏହାର ବିଶିଷ୍ଟତା ଅସାଧାରଣ ଥିଲା, ଗଦ୍ୟ-ସାହିତ୍ୟରେ ମଧ୍ୟ ଅଳ୍ପକାଳ ମଧ୍ୟରେ ଏହାର ପ୍ରାଧାନ୍ୟ ଯଥେଷ୍ଟ ବଢ଼ିଅଛି । ରଚକ ଓ ଲେଖକମାନଙ୍କର ସ୍ୱାଧୀନ ପ୍ରବୃତ୍ତିହିଁ ଏ ଉନ୍ନତିର ମୂଳ କାରଣ । ଅନୁକରଣ ଦ୍ୱାରା ଭାବ ଓ ଭାଷା ସଙ୍କୁଚିତ ହୁଏ । ଅନୁକରଣତା ସ୍ୱାଧୀନ ଭାବର ଅନ୍ତରାୟ । ଭାବରାଜ୍ୟ ସଙ୍କୁଚିତ ହେଲେ ଭାଷାର ବିସ୍ତୃତି ଅସମ୍ଭବ । ପର୍ଯ୍ୟବେକ୍ଷଣ, ପର୍ଯ୍ୟଟନ, ଅଭାବ ଜ୍ଞାନ, ବିପଦ୍‌ପାତ, ବିପଦ୍‌ପାତରୁ ରକ୍ଷା ପାଇବାର ପନ୍ଥା, ଅନ୍ୱେଷଣ ଇତ୍ୟାଦିରୁ ମନୁଷ୍ୟର ଭାଷାର ଶବ୍ଦ ସଂଖ୍ୟା ବୃଦ୍ଧିପ୍ରାପ୍ତ ହୋଇଅଛି । ଯେଉଁ ଜାତି ଯେତିକି ସଭ୍ୟ ଓ ଉନ୍ନତିଶୀଳ ତାର ଭାଷାକୋଷ ସେତିକି ବଡ଼ । ଅଶିକ୍ଷିତ ପ୍ରଚଳିତ ଅଳ୍ପ ସଂଖ୍ୟକ ଶବ୍ଦ ଯେନ ତୃପ୍ତ । ମାତ୍ର ଶିକ୍ଷିତ ଓ ସଭ୍ୟର ଆଶା ଓ ଆକାଂକ୍ଷା ସେଥିରେ ତୃପ୍ତ ହେବା ଅସମ୍ଭବ । ସଭ୍ୟର ଭାବରାଜ୍ୟର ବିସ୍ତୃତି ସଙ୍ଗେ ସଙ୍ଗେ ଶବ୍ଦ ସଂଖ୍ୟା ବୃଦ୍ଧି କରିବାର ନିତାନ୍ତ ପ୍ରୟୋଜନ ହୋଇଉଠେ । ସୁତରାଂ ଗ୍ରାମ୍ୟ ଓ ପ୍ରାଦେଶିକତା ତ୍ୟାଗ କରି ବିଶୁଦ୍ଧ ଭାଷା ଓ ପ୍ରାଞ୍ଜଳ ସାହିତ୍ୟ ଗଠନରେ ସଭ୍ୟର ପ୍ରବୃତ୍ତି ଜନ୍ମେ । ଏହି ନିୟମରେ ଭାଷା ଓ ସାହିତ୍ୟର ଉନ୍ନତି ଘଟିଥାଏ ।

ଓଡ଼ିଆ ଭାଷାର ଗ୍ରାମ୍ୟ ଓ ପ୍ରାଦେଶିକତା ବେଶୀ, ଯେହେତୁ ଓଡ଼ିଶା ଗୋଟିଏ କ୍ଷୁଦ୍ର ପ୍ରଦେଶ ନୁହେଁ; ତାହାଛଡ଼ା ଅରଣ୍ୟ ଓ ଗିରିସଙ୍କୁଳ ଏ ପ୍ରଦେଶର ଗତିପଥ ସବୁ ନିର୍ବାଧ ଓ ସୁଗମ ନଥିଲା । ଏଣୁ ପ୍ରତ୍ୟେକ କ୍ଷୁଦ୍ର ଭୂମି ବିଭାଗ ମଧ୍ୟ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛି । ଏହା ବୁଝାଇବା ନିଷ୍ପ୍ରୟୋଜନ । କିନ୍ତୁ ଏତାଦୃଶ ବାଧା

ପରନ୍ତୁ ବିଶୁଦ୍ଧ ଓଡ଼ିଆ ଭାଷା ଗଠିତ ହୋଇଅଛି ଓଡ଼ିଶାର କୃତବିଦ୍ୟ ପ୍ରାଚୀନ କବିମାନଙ୍କ ଦ୍ୱାରା । ତାହା ପାଠ କଲାବେଳେ ପ୍ରତ୍ୟେକ ଓଡ଼ିଆ ପ୍ରାଦେଶିକ ଓ ଗ୍ରାମ୍ୟଭାଷାକୁ ଭୁଲିଯାଆନ୍ତି ଏବଂ ନିଜେ ରଚନା କଲାବେଳେ ପୂର୍ବ କବିମାନଙ୍କର ପଦାଙ୍କ ଅନୁସରଣ କରି ଗ୍ରାମ୍ୟ ଶବ୍ଦ ତ୍ୟାଗକରି ଶକ୍ତ୍ୟାନୁସାରେ କାବ୍ୟ ଲେଖନ୍ତି । ପ୍ରତ୍ୟେକ ଲେଖାରେ ଗ୍ରାମ୍ୟ ଓ ପ୍ରାଦେଶିକ ଶବ୍ଦ ଯେ ନଥାଏ ଏପରି ନୁହେଁ, ମାତ୍ର କବିଙ୍କର ପ୍ରାଦେଶିକ ଓ ଗ୍ରାମ୍ୟ କଥା ଯେପରି ଅନ୍ୟ ପ୍ରଦେଶର ବା ଗ୍ରାମର ଲୋକ ବୁଝିବା ଅସମ୍ଭବ ହୁଏ କାବ୍ୟ ବୁଝିବାକୁ ସେପରି ଅସମ୍ଭବ ହୁଏ ନାହିଁ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ସମ୍ବଲପୁରର ଗ୍ରାମ୍ୟଭାଷା କଟକବାସୀଙ୍କୁ ବୁଝିବାକୁ ଯେପରି କଷ୍ଟ ସ୍ୱୀକାର କରିବାକୁ ହେବ, ବିଶୁଦ୍ଧ କଟକ ଗ୍ରାମ୍ୟଭାଷା ବୁଝିବାକୁ ସମ୍ବଲପୁରବାସୀଙ୍କୁ ମଧ୍ୟ ସେହିପରି କଷ୍ଟ ସ୍ୱୀକାର କରିବାକୁ ହେବ ।

ବର୍ତ୍ତମାନ ଦେଖାଯାଏ ଅନେକ ଲେଖକ ଗ୍ରାମ୍ୟଭାଷା ବ୍ୟବହାର କରିବାକୁ କୁଣ୍ଠିତ ନୁହନ୍ତି । ସେମାନଙ୍କ ବ୍ୟବହୃତ ଗ୍ରାମ୍ୟ ଶବ୍ଦ ଯେବେ ସମସ୍ତ ଉତ୍କଳବାସୀଙ୍କର ବୋଧଗମ୍ୟ ହୁଅନ୍ତା, ତେବେ ଗୋଟାକେତେ ଶବ୍ଦ ବ୍ୟବହାରରେ କ୍ଷତି ନ ଥାନ୍ତା; ମାତ୍ର ସେମାନଙ୍କର ବୁଝିବା ଉଚିତ ଯେ ଲେଖକର ଗ୍ରାମ୍ୟ ଶବ୍ଦ ସବୁ ସ୍ଥଳରେ ପାଠକର ଗ୍ରାମ୍ୟ ଶବ୍ଦ ନୁହେଁ । ପାଠକ ସେ ଗ୍ରାମ୍ୟ ଶବ୍ଦର ଅର୍ଥ ବୁଝିବାକୁ କିଂକର୍ତ୍ତବ୍ୟବିମୂଢ଼ ହେବା କଥା— ଯେହେତୁ ଏ ଦେଶରେ ଗ୍ରାମ୍ୟ ଶବ୍ଦକୋଷ ନାହିଁ । "ନନାଙ୍କ ବସ୍ତାନି" ରେ ବ୍ୟବହୃତ କଟକୀ ଗ୍ରାମ୍ୟଭାଷା ଲେଖକର ଲେଖା-ନୈପୁଣ୍ୟକୁ ପଢ଼ିବାକୁ ପ୍ରୀତିପ୍ରଦ ହେଲେ ମଧ୍ୟ ପ୍ରକୃତ ପକ୍ଷରେ ଅନ୍ୟ ପ୍ରଦେଶର ଲୋକଙ୍କର ବୋଧଗମ୍ୟ ହୁଏ ନାହିଁ । ଯେଉଁମାନଙ୍କ ନିମନ୍ତେ ଲେଖା, ସେମାନେ ଯେବେ ବୁଝିବାକୁ ଅକ୍ଷମ ତେବେ ସେ ଲେଖାର ପ୍ରୟୋଜନ କ'ଣ ? ପର ନିମନ୍ତେ ସାହିତ୍ୟର ସୃଷ୍ଟି । ଶବ୍ଦ-କାଠିଣ୍ୟ ଯେମନ୍ତ କାବ୍ୟର ଦୋଷ, ଗ୍ରାମ୍ୟତା ବିଶେଷତଃ ଅପ୍ରୟୋଜ୍ୟ ଗ୍ରାମ୍ୟତା ତତୋଽଧିକ ଆଳଙ୍କାରିକ ଦୋଷ ଅଟେ । ଓଡ଼ିଶାର ପ୍ରତ୍ୟେକ ପ୍ରଦେଶର ଲେଖକମାନେ ଯେବେ ଆପଣା ଆପଣା ପ୍ରଦେଶର ବା ଗ୍ରାମର ବ୍ୟବହୃତ ଶବ୍ଦ ବ୍ୟବହାର କରି ଦେଶ-ପ୍ରେମିକତା ଦେଖାଇବାକୁ ଯତ୍ନଶୀଳ ହୁଅନ୍ତି, ତା'ହେଲେ ଅଚିରେ ଯେ ଓଡ଼ିଆ ସାହିତ୍ୟର ଅଧୋଗତି ହେବ ଏଥିରେ କି ସନ୍ଦେହ କରିବାର ଅବସର ଅଛି ? ଆଧୁନିକ ଲେଖାର ଗୋଟିଏ ମାତ୍ର ଉଦାହରଣ ଦେଲେ ବୋଧହୁଏ କେହି ଅସଙ୍ଗତ ମନେକରିବେ ନାହିଁ । ସମ୍ପାଦକମାନଙ୍କର କାଳି, କାଗଜ ଓ ଅକ୍ଷର ଯଥେଷ୍ଟ ଅଛି ଏଣୁ ବୋଧହୁଏ ଶବ୍ଦ—ସଂକ୍ଷେପରେ ସେମାନେ ପକ୍ଷପାତୀ ହୁଅନ୍ତି ନାହିଁ । ତଥାପି ଲେଖକମାନେ ବୃଥାରେ କେତେଗୋଟା ଶବ୍ଦର ଅବୟବ ଛେଦନ କରିବାକୁ ଯତ୍ନଶୀଳ । ଯେମନ୍ତ ନାହିଁ ସ୍ଥଳରେ 'ନି' । ଏହାର ବହୁଳ ବ୍ୟବହାର ଦେଖି ଭୟ ହେଲାଣି । ମୁଁ ଯିବି ନାହିଁ ସ୍ଥଳରେ ଲେଖୁଅଛନ୍ତି ମୁଁ ଯିବିନି । ହୁଏତ କଟକ ଅଞ୍ଚଳରେ ଲୋକେ ତାହା ବୁଝି ପାରନ୍ତି ମାତ୍ର ଅନ୍ୟ ଅଞ୍ଚଳର ଲୋକପ୍ରତି ତାହା ବୁଝିବାକୁ କଷ୍ଟକର ହେବ । ମୁଁ ଯିବିନି ବ୍ୟବହାରର 'ନି' ଅକ୍ଷରଟି ଏ ଅଞ୍ଚଳରେ ନିଶ୍ଚୟାର୍ଥରେ ପ୍ରୟୋଗ ହୁଏ । ତମେ ଯାଇଥାଅ, ମୁଁ ଯିବିନି ଅର୍ଥାତ୍ ମୁଁ ନିଶ୍ଚୟ ଯିବି । ସୁତରାଂ ଏତାଦୃଶ ଦ୍ୱ୍ୟର୍ଥବୋଧକ ଗ୍ରାମ୍ୟ ଶବ୍ଦ ବ୍ୟବହାର ଦ୍ୱାରା ଯେ ସାହିତ୍ୟର ଉଦ୍ଦେଶ୍ୟ କ୍ଷୁଣ୍ଣ ହେବ ଏଥିରେ ସନ୍ଦେହ ନାହିଁ । ପ୍ରାଚୀନ ବୈୟାକରଣିକମାନେ କହନ୍ତି ଶବ୍ଦରୁ ଗୋଟାଏ ଅକ୍ଷର ସଂକ୍ଷେପ କରିପାରିଲେ ପୁତ୍ରଜନ୍ମର ଆନନ୍ଦ ମିଳେ । ସେ ସମୟ ଆମ ଦେଶକୁ ଆସିନାହିଁ ।

ଭାଷାକୁ ବିଶୁଦ୍ଧ କରିବାକୁ ହେଲେ ଏବଂ ସମସ୍ତଙ୍କର ବୋଧଗମ୍ୟ ହେଉ ଏ ଇଚ୍ଛା ଥିଲେ ଗ୍ରାମ୍ୟ ଶବ୍ଦ ବ୍ୟବହାର ଯେ ବର୍ଜନୀୟ ଏହା ବୋଧହୁଏ ଅସ୍ୱୀକାର୍ଯ୍ୟ ନୁହେଁ । ଭାଷା ବ୍ୟବଧାନ ସାହିତ୍ୟ ପ୍ରଗତିର ଅନ୍ତରାୟ । ଭାଷାର ବ୍ୟବଧାନ ଘଟେ ଗ୍ରାମ୍ୟତା ଦୋଷରୁ । ସୁତରାଂ ଆଧୁନିକ ଉତ୍କଳର ଶିକ୍ଷିତା ମହିଳା ବା ଶିକ୍ଷିତ ଘରର ମହିଳାମାନେ ଯେପରି ଅଶିକ୍ଷିତା ଗ୍ରାମ୍ୟନାରୀଙ୍କ ବ୍ୟବହୃତ ପିତ୍ତଳ ଅଳଙ୍କାର ଓ ମୋଟା ଲୁଗା ବ୍ୟବହାରକୁ ଦେଶ-ପ୍ରେମିକତାର ପରିଚାୟକ ବୋଲି ମନେକରନ୍ତି ନାହିଁ ସେହିପରି ଆଧୁନିକ ଲେଖକମାନେ ଗ୍ରାମ୍ୟ ଶବ୍ଦ ବ୍ୟବହାରକୁ ଦେଶ-ପ୍ରେମିକତାର ପରିଚାୟକ ବୋଲି ମନେକରିବେ ନାହିଁ ।

# ସାହିତ୍ୟ ଓ ଜାତି

ବଡ଼ ଗୁରୁତର ବିଷୟ । ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିର ଚିନ୍ତାର ସାମଗ୍ରୀ । ପ୍ରତ୍ୟେକ ସାହିତ୍ୟିକ ଓ ଶିକ୍ଷକ ଏ ସମ୍ବନ୍ଧରେ ବେଳେ ବେଳେ ଚିନ୍ତା କରୁଥିବେ ବୋଲି ମୋର ବିଶ୍ୱାସ । ମୁଁ ମଧ୍ୟ ଯେ ଏ ସମ୍ବନ୍ଧରେ ନିଜର ଶିକ୍ଷା ଓ ଶକ୍ତି ଅନୁଯାୟୀ ଚିନ୍ତା ନ କରେଁ, ଏପରି ନୁହେଁ; ତେବେ ପଦେ ଅଧେ କେବେ ଲେଖି ନାହିଁ । ଆଜି ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କ ଗବେଷଣାପୂର୍ଣ୍ଣ ସୁଚିନ୍ତିତ ପ୍ରବନ୍ଧଟି ପାଠ କରି ଦୁଇପଦ ଲେଖିବାକୁ ବସିଅଛି । ଏହା ଉକ୍ତ ପ୍ରବନ୍ଧର ସମାଲୋଚନା ନୁହେଁ, ପ୍ରତିବାଦ ନୁହେଁ । ଏହା ନିଜର ସ୍ୱାଧୀନ ମତ । ରାଜଗୁରୁଙ୍କ ପ୍ରବନ୍ଧରେ ଦୁଇ ପଦ ନିଜ ମତ ଯୋଗ କରିବାହିଁ ମୋର ଉଦ୍ଦେଶ୍ୟ ।

ମୁଁ ଅଦା ବେପାରୀ, ଜାହାଜର ଖବର ନେବା ମୋ ପକ୍ଷରେ ସଙ୍ଗତ ନୁହେଁ । ମୁଁ ଅଦା ବେପାରର ଆଲୋଚନା କରିବି ।

"ସାହିତ୍ୟର ଉନ୍ନତିରେ ଜାତୀୟ ବିକାଶ ସମ୍ପାଦିତ ହୁଏ" ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଏଥି ସଙ୍ଗରେ ଯୋଗ କରାଯାଇ ପାରେ ଯେ, ସାହିତ୍ୟଦ୍ୱାରା ଜାତୀୟ ବିକାଶର ପରିଚୟ ମିଳେ । ଏହା ହୋଇ ନ ଥିଲେ ଆଜି ଆମ୍ଭମାନଙ୍କର ସ୍ଥାନ କେଉଁଠାରେ ? ମୁଦ୍ରାଯନ୍ତ୍ରର ପ୍ରଚଳନ ପୂର୍ବରୁ ଆମ୍ଭ ଦେଶବାସୀ ଯେବେ ଲେଖନ ସାହାଯ୍ୟରେ ତାଳପତ୍ରରେ ଆକ୍ଷରିକ କୀର୍ତ୍ତି ରଖିଯାଇ ନ ଥାନ୍ତେ, ତେବେ ଆଧୁନିକ ସଭ୍ୟ ଜଗତରେ ଆମ୍ଭମାନଙ୍କୁ ଶିକ୍ଷିତ ଜାତିର ସନ୍ତାନ ବୋଲି କିଏ ପରିଚୟ କରାଇ ଦିଅନ୍ତା ? ଯେବେ ସଭ୍ୟ ସମାଜରେ ଆମ୍ଭମାନଙ୍କର କୌଣସି ସ୍ଥାନ ଥାଏ, ତାହା ଏହି ତାଳପତ୍ର ଲେଖା ସାର୍ଟିଫିକେଟ ବଳରେ । ଏ ତ ଗତ କଥା । ମାତ୍ର ଭବିଷ୍ୟତ ବଂଶଧରଙ୍କ ନିମନ୍ତେ ଆମ୍ଭେମାନେ ସାର୍ଟିଫିକେଟ ରଖି ଯାଇ ପାରିବାଟି କି ?

"Language is a part of man's character," ଏହା ମଧ୍ୟ ଗୋଟିଏ ଅବିସମ୍ବାଦିତ ସତ୍ୟ । ବ୍ୟକ୍ତିଗତ ଚରିତ୍ର ଓ ଜାତୀୟ ଚରିତ୍ର ଭାଷାରେ ପରିସ୍ଫୁଟ ହୁଏ, ଯେବେ ଲେଖକମାନେ ସ୍ୱାଧୀନ ମତ ବ୍ୟକ୍ତ କରିବାରେ କୁଣ୍ଠିତ ନ ହୁଅନ୍ତି । ସ୍ୱାଧୀନ ମତସମ୍ବଳିତ ସାହିତ୍ୟ ଜାତୀୟ ବିକାଶର ପରିଚାୟକ । ଯେଉଁ ଚରିତ୍ର ଚିତ୍ର ଓ ସ୍ୱାଧୀନ ଚିନ୍ତା ବ୍ୟକ୍ତ ହେବା ଦ୍ୱାରା ସାହିତ୍ୟର ଅଙ୍ଗ ପୁଷ୍ଟ ହୁଏ, ଆମ୍ଭମାନଙ୍କର ଏ ସମୟରେ ଦେଶରେ ତାହିଁର ଅଭାବ କେଉଁ ଚିନ୍ତାଶୀଳ ବ୍ୟକ୍ତି ଅନୁଭବ କରୁନାହାନ୍ତି ? ସ୍ୱାଧୀନ ଚିନ୍ତା କରିବାର ସୁଯୋଗ ଅଛି କି ? ସ୍ୱାଧୀନ ମତ ବ୍ୟକ୍ତ କରିବାର ସାହସ ଅଛି କି ?

ପୂର୍ବେ ଲୋକେ ଜ୍ଞାନ ଉପାର୍ଜନ ନିମନ୍ତେ, ଧର୍ମୋପାର୍ଜନ ନିମନ୍ତେ ଏବଂ ଆତ୍ମୋନ୍ନତି ନିମନ୍ତେ ବିଦ୍ୟାଭ୍ୟାସ କରୁଥିଲେ । ଏ କାଳରେ ଧନ ଉପାର୍ଜନ ନିମନ୍ତେ କେବଳ ବିଦ୍ୟା ଉପାର୍ଜନ । ଗବେଷଣା, ଆବିଷ୍କାର,

ତତ୍ତ୍ୱାନୁସନ୍ଧାନ ନିମନ୍ତେ କେତେଜଣ ଭାରତବାସୀ ଇଚ୍ଛା ପୂର୍ବକ ବିଦ୍ୟାଭ୍ୟାସ କରନ୍ତି ? ଚାକିରି ନିମନ୍ତେ ବିଦ୍ୟାଶିକ୍ଷା । ଚାକିରି କରୁ କରୁ ଜଣକେତେ ଗବେଷଣା କରିବାର ସୁଯୋଗ ପାଇ କିଛି ଆବିଷ୍କାର କରିବାକୁ ବା କିଛି ମୌଳିକତ୍ୱ ଦେଖାଇବାକୁ ସମର୍ଥ ହୋଇଅଛନ୍ତି । ସାହିତ୍ୟ-କ୍ଷେତ୍ରରେ ମଧ୍ୟ ତଦ୍ରୂପ । ଏ ଦେଶରେ ସ୍ୱାଧୀନ ସାହିତ୍ୟସେବୀ, କବି, ରଚକ, ବୈଜ୍ଞାନିକ କେତେ ଜଣ ? ଅର୍ଥକରୀ ବିଦ୍ୟା ନିମନ୍ତେ ସମସ୍ତେ ଲାଳାୟିତ । ଦେଶୀୟ ଭାଷା ତ ଅର୍ଥକରୀ ନୁହେ, ଏଣୁ ଦେଶୀୟ ଭାଷାର ଉନ୍ନତି ଆଶା ସୁଦୂର ପରାହତ ।

ଅଳକ୍ଷ୍ୟରେ ଇଂରାଜୀ ଭାଷା ଅର୍ଥକରୀ ଓ ଜାତୀୟ ଭାଷା ହୋଇଉଠୁଅଛି । ତା ସଙ୍ଗରେ ପ୍ରତିଦ୍ୱନ୍ଦ୍ୱୀ ହୋଇ ଦେଶୀୟ ଭାଷା ଉନ୍ନତିପଥରେ ଅଗ୍ରସର ହେବା ଆଶା କେତେ ଦୂର ?

ଦେଶୀୟ ଭାଷା ଶିକ୍ଷା ଉଚ୍ଚପ୍ରାଥମିକ ବା ଛାତ୍ରବୃତ୍ତି ଶିକ୍ଷାରେ ପର୍ଯ୍ୟବସିତ । ତେଣିକି ଉଚ୍ଚଶିକ୍ଷା ଉପଯୁକ୍ତ ପୁସ୍ତକ ବା ବିଷୟ ଦେଶୀୟ ସାହିତ୍ୟରେ ଅଛି ବୋଲି କର୍ତ୍ତୃପକ୍ଷ ତଥା ଦେଶବାସୀଙ୍କର ଧାରଣା ନାହିଁ । ସୁତରାଂ ଉଚ୍ଚ ଅଙ୍ଗର ସାହିତ୍ୟ ପ୍ରଚାର ହେବା ଅସମ୍ଭବ ।

ଆଜିକାଲି ପ୍ରାୟ ସମସ୍ତେ ଇଂରାଜୀ ସାହିତ୍ୟସେବୀ । କେହି କେହି ଦୟାପରବଶ ହୋଇ ମାତୃଭାଷାର ଉନ୍ନତିକଳ୍ପେ ଶୁଭ ଦୃକ୍‌ପାତ କଲେ ସୁଦ୍ଧା ଏବଂ ମାତୃଭାଷାର ଅଙ୍ଗ ପୁଷ୍ଟ କରିବାକୁ କିଞ୍ଚିତ୍ ଚେଷ୍ଟା କଲେ ସୁଦ୍ଧା ଅଧିକାଂଶ ସ୍ଥଳରେ ଭାବ ଓ ଧରଣ ସମ୍ପୂର୍ଣ୍ଣ ଅନୁକରଣ ବୋଲି ପ୍ରକାଶ ପାଏ ।

ନିର୍ଭୀକଭାବରେ ମନୋଗତ ଭାବ ପ୍ରକାଶ କଲେ ସାହିତ୍ୟର ପ୍ରକୃତ ବିକାଶ ହୁଏ । କବି ଓ ଲେଖକ ଆନ୍ୟଙ୍କ ଭାବ ବ୍ୟକ୍ତ କରିବାକୁ ବାଧ୍ୟ ପ୍ରାପ୍ତ ହୋଇ ଯେଉଁ କବିତା ବା ରଚନା ଲେଖନ୍ତି, ତାହା କେବଳ ସାହିତ୍ୟିକ ପ୍ରବଞ୍ଚନା । ଏପରି ଲେଖା ପାଠ କରି ପରବର୍ତ୍ତୀ କାଳର ଲୋକେ ଜାତୀୟ ବିକାଶର ପରିଚୟ ପାଇବା କଳ୍ପନା ମଧ୍ୟ ବିଡ଼ମ୍ବନା ।

ଓଡ଼ିଆ ଭାଷାର ସମ୍ୟକ୍ ଉନ୍ନତିର ଅନ୍ତରାୟ ଅନେକ । ଏହା ଅର୍ଥକରୀ ନୁହେ, ଅର୍ଥାତ୍ କେବଳ ଓଡ଼ିଆ ପାଠ ପଢ଼ି ପେଟ ପୋଷିବା ଆଶା ନାହିଁ । ଅର୍ଥକରୀ ବିଦ୍ୟା ଇଂରାଜୀ । ତାହା ଅର୍ଥକରୀ ହେବ ବୋଲି ମନପ୍ରାଣ ଢାଳିଦେବାକୁ ପଡ଼େ । କ୍ରମେ ତାହା ମନ ପ୍ରାଣ ଉପରେ, ନା, ଚରିତ୍ର ଉପରେ ମଧ୍ୟ ଆଧିପତ୍ୟ କରିବସେ—ସେତେବେଳେ ନିଜର ମାତୃଭାଷାର ସେବା କରିବାକୁ ଆଉ ସେବକର ଅବସର ନ ଥାଏ । ଜଣଙ୍କ ପ୍ରତି ଦୁଇଟି ସେବ୍ୟର ସେବକ ହେବା ଅସମ୍ଭବ ନୁହେ; ମାତ୍ର ଯାହାର ବେଶି ଆଧିପତ୍ୟ, ତାର ପାଦସେବାରେ ଅଧିକ ସମୟ ଅତିବାହିତ ହେବା ନିତାନ୍ତ ସ୍ୱାଭାବିକ । ତା ପରେ ଇଂରାଜୀ ଶିକ୍ଷିତଙ୍କ ପ୍ରତି ଇଂରାଜୀ ପୁସ୍ତକର ସଂଖ୍ୟା ପ୍ରଚୁର । ଓଡ଼ିଆ ପୁସ୍ତକର ନିତାନ୍ତ ଅଭାବ । ଯାହା କିଛି ଅଛି, ତାହା ଉଚ୍ଚ ଦରର ନୁହେ ଯେ ପାଠକମାନଙ୍କୁ ଦଣ୍ଡେ ମୋହିତ କରିପାରିବ—ବିଶେଷତଃ ଉପନ୍ୟାସ । ପାଠକମାନଙ୍କ ମନ ଅଧିକାର କରିବା ନିମନ୍ତେ ଇଂରାଜୀ ଓ ବଙ୍ଗ ସାହିତ୍ୟ ଆମ ମାତୃଭାଷାର ପ୍ରତିଦ୍ୱନ୍ଦ୍ୱୀ । ପାଶ୍ଚାତ୍ୟ ଜାତି ଆମ ଦେଶରୁ ଧନ ଓ ଜ୍ଞାନ ଉପାର୍ଜନ କରନ୍ତି ତାଙ୍କ ଦେଶର ଓ ତାଙ୍କ ମାତୃଭାଷାର ଉନ୍ନତି ନିମନ୍ତେ । ଆଉ ଆମ୍ଭେମାନେ ବିଦେଶୀ ଜ୍ଞାନ ଉପାର୍ଜନ କରୁଁ ନିଜ ଦେଶର ଧନ ଶୋଷଣ କରି ପର ଦେଶକୁ ବଢ଼ାଇଦେବା ନିମନ୍ତେ । ଆମ ଦେଶର ପ୍ରତ୍ୟେକ ସାହିତ୍ୟିକ, କବି ଓ ଲେଖକଙ୍କର ଏହାହିଁ ଅବଶ୍ୟ କର୍ତ୍ତବ୍ୟ ଯେ, ସେମାନେ ପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟର ସେବା କରି ଜ୍ଞାନ ଉପାର୍ଜନ କରିବେ ନିଜ ମାତୃଭାଷାର ସେବାରେ ଲଗାଇବାକୁ, ଶୂନ୍ୟ ଭଣ୍ଡାରକୁ ପୂରଣ କରିବାକୁ, ଛିନ୍ନବସ୍ତ୍ରା ମାତୃଭାଷାକୁ ସୁଭୂଷିତା କରିବାକୁ, ନିରଳଙ୍କାର ମାତୃଭାଷାକୁ ଅଳଙ୍କୃତ କରିବାକୁ । ନବ୍ୟ ଶିକ୍ଷିତଗଣ ଏ ପନ୍ଥା ଅବଲମ୍ବନ ନ କଲେ ମାତୃଭାଷାର କ୍ଷୀଣ ଆଶାଲତା ଦିନକୁ ଦିନ କ୍ଷୀଣତର ହେବ ।

ମୁଁ ଥରେ ଥରେ ଭାବେଁ, ଶିକ୍ଷା ବଡ଼ ନା ଚରିତ୍ର ବଡ଼ ? କାହାର ସ୍ଥାନ ଉଚ୍ଚରେ ? ସମସ୍ୟା ବଡ଼ ଜଟିଳ । ମୋ ପରି ବ୍ୟକ୍ତି ଏ ସମ୍ବନ୍ଧରେ ଗୋଟାଏ ମତ ଦେବା ଧୃଷ୍ଟତାର ପରିଚାୟକ । ତଥାପି ଚରିତ୍ରକୁ ଉଚ୍ଚସ୍ଥାନ ଦେବାକୁ ମନ ବଳେ । କାରଣ ଚରିତ୍ରବିହୀନ ଶିକ୍ଷା ଆମ୍ବଶ୍ଳାଘାରୂପ ଘୂର୍ଣ୍ଣି ବାୟୁ-ବିତାଡ଼ିତ ଆଶାତରୀ ମାତ୍ର । ଧର୍ଷିତ ଜାତିର ଚରିତ୍ର ବଳ ଅସ୍ତବଳ ପରି ପରିଭ୍ରଷ୍ଟ । ଜାତୀୟ ଅଭ୍ୟୁତ୍ଥାନ ନିମନ୍ତେ ନୈତିକ ବଳ ସଞ୍ଚୟ ଏକାନ୍ତ ଆବଶ୍ୟକ । ଜାତୀୟ ଚରିତ୍ର ସାହିତ୍ୟରେ ପରିସ୍ଫୁଟ ହେଲେ ଜାତୀୟ ବିକାଶ ସମ୍ପାଦିତ ହୁଏ ଏବଂ ଭବିଷ୍ୟତ ଜାତୀୟ ଜୀବନ ଗଠନରେ ପ୍ରଭୂତ ସାହାଯ୍ୟ କରେ ।

ଏଲିଜାବେଥ୍‌ଙ୍କ ରାଜତ୍ୱକାଳ ୪୫ ବର୍ଷ । ଏହି କେତୋଟା ବର୍ଷ ଶାନ୍ତି ଓ ଉନ୍ନତିର କାଳ ବୋଲି ଐତିହାସିକମାନଙ୍କର ମତ । ୪୫ ବର୍ଷରେ ଗ୍ରେଟ୍‌ବ୍ରିଟେନ୍‌ରେ ୧୫ ଗୋଟି ଦୁର୍ଭିକ୍ଷ ପଡ଼ିଥିଲା । ପଡ଼ିଥାଇ ପାରେ । ସେ ଦେଶର ଐତିହାସିକ ଓ ଲେଖକଙ୍କ କଲମ ଜୋର ଓ ହୃଦୟସ୍ପର୍ଶୀ ବର୍ଣ୍ଣନାଚାତୁରୀ ଯୋଗରୁ ଆମ୍ଭେମାନେ ଏତେଦିନ ପରେ ମଧ୍ୟ ସେହି ଦୁର୍ଭିକ୍ଷଗୁଡ଼ିକୁ ଭୟଙ୍କର ବୋଲି କହୁଅଛୁଁ । ମାତ୍ର ଆମ ଦେଶରେ ଏତିକି ସମୟ ମଧ୍ୟରେ ଯେ ଭୟଙ୍କର ହୃଦୟବିଦାରକ ଦୁର୍ଭିକ୍ଷ ଓ ମଡ଼କର ପ୍ରାଦୁର୍ଭାବ ହୋଇ ଲକ୍ଷ ଲକ୍ଷ ନରନାରୀଙ୍କର ଇହଜଗତରେ ଚିହ୍ନ ବର୍ତ୍ତି ରହିନାହିଁ, ତାହା କିଏ ବର୍ଣ୍ଣନା କରିବ ? ତାହା ଲେଖିବାକୁ କ୍ଷମତା କାହାର— ସାହସ କାହାର ? ଦୁର୍ଭିକ୍ଷ ଅନ୍ୟ ଦେଶରେ ପଡ଼େ, ଏ ଦେଶରେ ପଡ଼େ ଓ ଇଙ୍ଗଲଣ୍ଡରେ ପଡ଼ିଥିଲା । ମାତ୍ର ଏ ଦେଶର ଦୁର୍ଭିକ୍ଷର ହୃଦୟବିଦାରକ ଜନନାଶ ଅନ୍ୟ ଦେଶରେ ଘଟେ କି ନାହିଁ ସନ୍ଦେହ । ଅନ୍ନ ମୁଠାକ ନିମନ୍ତେ ପରିବାର ଘରଦ୍ୱାର ଛାଡ଼ି ସ୍ଥାନାନ୍ତରକୁ ଯିବାବେଳେ ବାଟରେ ଘାଟରେ ସ୍ୱାମୀ, ସ୍ତ୍ରୀ, ପୁତ୍ର, କନ୍ୟା ଏଣେ-ତେଣେ ପଡ଼ିରହନ୍ତି— କେହି କାହାକୁ ସାହାଯ୍ୟ କରିବାର ଉପାୟ ନାହିଁ । ସହାୟହୀନ, ଆଶାହୀନ, ଭରସାହୀନ ସମସ୍ତେ ! ଜୀର୍ଣ୍ଣ ଶୀର୍ଣ୍ଣ ମୃତ ସନ୍ତାନର ଶବକୁ ଗୃଧ୍ରମାନେ ଅବଲୀଳାକ୍ରମେ ଛିନ୍ନ ବିଚ୍ଛିନ୍ନ କରୁଅଛନ୍ତି, ଅସ୍ତବ୍ୟସ୍ତ କରୁଅଛନ୍ତି, ଅନତିଦୂରରେ ପିତାମାତା ଅଶ୍ରୁଶୂନ୍ୟ ବିକଳ ନୟନରେ ଦେଖୁଅଛନ୍ତି ! ସାହାଯ୍ୟ କରିବାର ଶକ୍ତି ନାହିଁ । ସନ୍ତାନର ମାଂସହୀନ ଶବର ଭକ୍ଷଣରେ ତୃପ୍ତିଲାଭ ନ କରି ଅର୍ଦ୍ଧମୃତ ସ୍ୱାମୀର ମାଂସଭକ୍ଷଣ ଲାଳସାରେ ଗୃଧ୍ରଗଣ ନିକଟରେ ବସି ବିକଟ ରବରେ ତାହାର ମୃତ୍ୟୁକାମନା କରୁଥିବାର ନିଃସହାୟା ଜୀବନ-ସଙ୍ଗିନୀ ଦେଖୁଅଛି ! ଏ ବୀଭତ୍ସ ଦୃଶ୍ୟ ଭାରତ ଭିନ୍ନ ଅନ୍ୟ ଦେଶରେ ବିରଳ । ତଥାପି ଭାରତ ସୁଖୀ—ତାହାର ଅବସ୍ଥା ଶୋଚନୀୟ ନୁହେଁ । ଏ ଦୃଶ୍ୟ ପାଶ୍ଚାତ୍ୟ ଦେଶବାସୀଙ୍କ ଦୃଷ୍ଟିରେ ପଡ଼ିଲେ କେତେ ହୃଦୟସ୍ପର୍ଶୀ ବର୍ଣ୍ଣନା ସାହିତ୍ୟର ଅଙ୍ଗ ପୁଷ୍ଟ କରନ୍ତା ! ଦୁର୍ଭିକ୍ଷ ପ୍ରଭୃତି ସାହିତ୍ୟିକ ଉନ୍ନତିର ଅନ୍ତରାୟ ନୁହନ୍ତି, ବରଂ ସହାୟ । ସମସାମୟିକ ଲୋକଙ୍କର ସହାନୁଭୂତି ଏବଂ ଭବିଷ୍ୟତରେ ସାବଧାନ ଓ ସତର୍କ ହେବାର ଉପଦେଶ ଲେଖକ ସାହିତ୍ୟରେ ରଖିଯାଇ ଯଶ ଲାଭ କରେ । ଲୋକକ୍ଷୟକାରୀ ଯୁଦ୍ଧ, ବିପ୍ଳବ ସାହିତ୍ୟୋନ୍ନତିର ଅନ୍ତରାୟ ନୁହେ । ଫରାସୀ ରାଷ୍ଟ୍ରବିପ୍ଳବ କେତେ ମହାକବି, ଔପନ୍ୟାସିକ, ଐତିହାସିକଙ୍କୁ ଜନ୍ମ ଦେଇଅଛି । ଏ ଯେନ୍ତ କେବଳ ଫରାସୀ ସାହିତ୍ୟର ଉନ୍ନତି ବୋଇଲେ ଅତ୍ୟୁକ୍ତି ହେବ କି ? ଜାର୍ମାନ ମହାହବ ଯେନ୍ତ ପାଶ୍ଚାତ୍ୟ ସାହିତ୍ୟ ଆଜି କେତେ ସୁପୁଷ୍ଟ । କବି, ଔପନ୍ୟାସିକ, ଲେଖକ ଯୁଦ୍ଧରେ ଜୀବନାହୁତି ଦେଇଅଛନ୍ତି ସତ୍ୟ; ମାତ୍ର ପୁଣି କେତେ କେତେ କବି, ଔପନ୍ୟାସିକ ଓ ଲେଖକ ଖ୍ୟାତି ଲାଭ କରିଅଛନ୍ତି । ଇଉରୋପ ଖଣ୍ଡରେ ଏ ଯେନ୍ତ ସହସ୍ରାଧିକ ପୁସ୍ତକ ରଚିତ ହୋଇ ନ ଥିବ କି ? ରୁଷ ବିପ୍ଳବ ଯେନ୍ତ ଜଗତରେ କେତେ ପୁସ୍ତକ ରଚିତ ହୋଇ ସାହିତ୍ୟର ଅଙ୍ଗପୁଷ୍ଟି କରୁଅଛି ।

ଲିସ୍‌ବନ ଭୂମିକମ୍ପରେ ଅନେକ ଘର କୋଠା ନଷ୍ଟ ହେଲା, ନରନାରୀଙ୍କର ପ୍ରାଣ ନଷ୍ଟ ହେଲା । ଏହା ଗୋଟିଏ ମର୍ମନ୍ତୁଦ ଘଟନା । ଏହି ମର୍ମନ୍ତୁଦ ଘଟନାର ଗୋଟିଏ ଚିତ୍ର ସାହିତ୍ୟ ଆପଣା ହୃଦୟରେ କାଟି ରଖିଅଛି । ଆଜି ସେହି ଚିତ୍ରଟି ଦେଖି ଲୋକେ ବିସ୍ମିତ ଓ ସ୍ତମ୍ଭିତ ହେଉଅଛନ୍ତି । ଏହି ବିପର୍ଯ୍ୟୟ ଦ୍ୱାରା କରି ସାହିତ୍ୟର କ୍ଷତି ?

ଯୁଦ୍ଧ, ବିପ୍ଳବ, ଭୂମିକମ୍ପ, ଦୁର୍ଭିକ୍ଷଦ୍ୱାରା ସାହିତ୍ୟ କ୍ଷତିଗ୍ରସ୍ତ ହେବାର କେବେ ଶୁଣା ନାହିଁ । ଏ ସବୁ ଯେପରି ସାହିତ୍ୟ । ସାହିତ୍ୟ କ୍ଷତିଗ୍ରସ୍ତ ହୁଏ ଚରିତ୍ରହୀନ, ଆତ୍ମଗୋପନକାରୀ ଲେଖକର ଲେଖନୀ ସ୍ଖଳନାଦ୍ୱାରା, ସାହିତ୍ୟ କ୍ଷତିଗ୍ରସ୍ତ ହୁଏ ସ୍ୱାଧୀନ ଚିନ୍ତାର ଅଭାବରୁ । କୃପଣପ୍ରୋଥିତ ଗୁପ୍ତଧନ ଯେପରି ଲୋକର ଉପକାରକୁ ଆସିପାରେ ନାହିଁ, ସାହିତ୍ୟିକର ଆତ୍ମମତ ଗୋପନ ସାହିତ୍ୟର ଉପକାରକୁ ଆସିପାରେ ନାହିଁ । ନାନା କାରଣରୁ ଆମ ଦେଶର ସାହିତ୍ୟିକ କ୍ଷତି ପୂରଣ ହେବାର ଆଶା ସୁଦୂର ପରାହତ ।

ଆଉ ଗୋଟିଏ କଥା – ଦାରିଦ୍ର୍ୟ । ଦାରିଦ୍ର୍ୟ କି ସାହିତ୍ୟ-ସେବାର ପ୍ରତିବନ୍ଧକ ? ଏହା କେହି ଅସ୍ୱୀକାର କରିପାରିବେ ନାହିଁ । ଯେ, ଦାରିଦ୍ର୍ୟ କେତେକାଂଶରେ ସାହିତ୍ୟ-ସେବାର ପ୍ରତିବନ୍ଧକ ସ୍ୱରୂପ । ମାତ୍ର ସାହିତ୍ୟିକର ଚରିତ୍ରବଳ ଯଥେଷ୍ଟ ଥିଲେ ସେ ସାହିତ୍ୟସେବା ନିମନ୍ତେ ଦାରିଦ୍ର୍ୟକୁ ମଧ୍ୟ ଭ୍ରୂକ୍ଷେପ କରେ ନାହିଁ; ଦାରିଦ୍ର୍ୟ ମସ୍ତକରେ ପଦାଘାତ କରି ସାହିତ୍ୟ ଲେଖିବାରେ ବ୍ରତୀ ହୁଏ । ଦାରିଦ୍ର୍ୟର କୁଟିଳ ଭ୍ରୂଭଙ୍ଗୀ, ନିଷ୍ପେଷଣ, ଛିଦ୍ରସବୁ ତନ୍ନ ତନ୍ନ କରି କେବଳ ଦାରିଦ୍ର୍ୟ କଶାଘାତପ୍ରାପ୍ତ ବ୍ୟକ୍ତିହିଁ ବ୍ୟକ୍ତ କରିପାରେ । ସୁଖାଦ୍ୟ-ପରିପୁଷ୍ଟ ଦୁଗ୍ଧଫେନନିଭ ଶଯ୍ୟୋପବିଷ୍ଟ ଧନିକପୁତ୍ର କି ଦାରିଦ୍ର୍ୟର ବିକଟ ରୂପ ବର୍ଣ୍ଣନରେ କ୍ଷମ ! ତାହା କରିବାକୁ ଗଲେ ସାହିତ୍ୟିକ ପ୍ରବଞ୍ଚନା ବୋଲି ପ୍ରତିପନ୍ନ ହେବ ।

ଜନସନ, ଏଣ୍ଡ୍ରସନଙ୍କ ଅପେକ୍ଷା ଶତ ଗୁଣରେ ଦରିଦ୍ର ଆମ ଦେଶବାସୀ କବି, ଲେଖକ ଅନେକ ପୁସ୍ତକ ରଚନା କରି ସାହିତ୍ୟାଗାରରେ ରଖିଯାଇଅଛନ୍ତି । ରଚନା ହିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ— ଅର୍ଥଲାଳସାରେ ସେମାନେ ଲେଖନୀ ଧାରଣ କରିନାହାନ୍ତି । ମୁଦ୍ରାଯନ୍ତ୍ରଯୋଗୁଁ ପୁସ୍ତକ ବିକ୍ରୟ ଗୋଟାଏ ଉପାର୍ଜନର ପନ୍ଥା ହୋଇଅଛି । ତାଳପତ୍ର ପ୍ରଚଳନ ବେଳେ ସେ ଉପାୟ ନ ଥିଲା ।

ସାହିତ୍ୟିକମାନଙ୍କୁ ଗୁଣଗ୍ରାହୀ ସାହିତ୍ୟରସିକ ଓ ପାଠକଗଣ ନିଶ୍ଚୟ ସାହାଯ୍ୟ କରିବା ଉଚିତ । ତାହା ନ ହେଲେ ସାହିତ୍ୟର ପ୍ରଚାର ହେବ କିପରି ? ମାତ୍ର ସାହିତ୍ୟିକ ଓ ଲେଖକ ନିଜ ରଚନା ଓ କବିତା ପ୍ରକାଶେ ପରମୁଖାପେକ୍ଷୀ ହେବା ଉଚିତ ନୁହେଁ । ଲେଖକ ଲେଖିଯାନ୍ତୁ ମୁଦ୍ରିତ ଓ ପ୍ରଚାରିତ ହୋଇପାରିବା କଥା ପଛେ । ଯେବେ ଦେଶବାସୀ ଏବଂ ଧନବନ୍ତ ବ୍ୟକ୍ତିମାନେ ଦେଶହିତ ନିମନ୍ତେ ଉପଯୁକ୍ତ ସାହାଯ୍ୟ ନ କରନ୍ତି, ସେଥି ନିମନ୍ତେ ସେମାନେ ନିନ୍ଦାଭାଜନ ହେବେ ।

ସାହିତ୍ୟିକ ଧନ ଆଶାରେ କାହାରି ଆଶ୍ରୟ ନେଲେ ତାର ସ୍ୱାଧୀନ ଚିନ୍ତା ବିକାଶ ପାଏ ନାହିଁ —କବିତା ବା ରଚନା କାପଟ୍ୟପୂର୍ଣ୍ଣ ହୁଏ । କବି, ଶିଳ୍ପୀ, ଚିତ୍ରକର ଓ ଲେଖକ ସମ୍ପୂର୍ଣ୍ଣ ସ୍ୱାଧୀନଚେତା ହେବା ନିତାନ୍ତ ଆବଶ୍ୟକ ।

"ଭାରତର ହିନ୍ଦୁମାନଙ୍କର ପ୍ରତ୍ୟେକ ଚିନ୍ତାଧାରାରେ ରକ୍ଷଣଶୀଳତା ଜର୍ଜର ହୋଇ ରହିଅଛି ।" ଏହା ଅକ୍ଷରେ ଅକ୍ଷରେ ସତ୍ୟ, ସତ୍ୟ, ସତ୍ୟ । ମୁଁ ଏହା ନତମସ୍ତକରେ ସ୍ୱୀକାର କରୁଅଛି । ଏ ରକ୍ଷଣଶୀଳତା ଥିଲା, ଅଛି ଓ ରହିବ । ଏଥିର ଉପାୟ କଣ ? ଚରିତ୍ରହୀନତା, ନୈତିକବଳର ଅଭାବ, ଏକତାର ଅଭାବ, ସ୍ୱାଧୀନ ଚିନ୍ତାର ଅଭାବ, ସ୍ୱାଧୀନ ମତ ବ୍ୟକ୍ତ କରିବାରେ ଭୀରୁତା ଓ ସ୍ୱାର୍ଥପରତା 'ରକ୍ଷଣଶୀଳତା' ର ଉତ୍ପତ୍ତି ଓ ସ୍ଥିତିର କାରଣ । ସାହିତ୍ୟ କଥା ତ କେତେ ଥାଉ--ଦୁଃଖ ସୁଖ ଓ ଜୀବନ ସମସ୍ୟା କଥା ଦେଖାଯାଉ । ପିତା ସ୍ନେହପାଳିତ ପୁତ୍ର କନ୍ୟା ମଧ୍ୟରୁ କନ୍ୟାଟିକୁ ବାଲ୍ୟବିବାହ ରୂପ ସୁସଜ୍ଜିତ କ୍ଷୁଦ୍ର ନୌକାରେ ବସାଇ ଜୀବନ ସମୁଦ୍ର ପାରି ହେବାକୁ ପେଲି ଦେଇ କୂଳରେ ଦର୍ଶକସ୍ୱରୂପ ହୋଇ ସୁଖରେ ତାଳି ଦେଉଅଛନ୍ତି ଏବଂ ନୌକା ଅତି ଅଳ୍ପ ଦୂରରେ ନିମଜ୍ଜମାନ ହେଲାରୁ ଏବଂ ସ୍ନେହମୟୀ ବାଳିକା ବୈଧବ୍ୟାବର୍ତ୍ତରେ ପଡ଼ି ଖାହି ଡାକ ଛାଡ଼ିଲା ବେଳେ ତା ମୁଣ୍ଡରେ ବ୍ରହ୍ମଚର୍ଯ୍ୟରୂପ ପଥର ଥାପ ଦେବାକୁ ଚେଷ୍ଟା କରୁଅଛନ୍ତି ! ଏହା ବାସ୍ତବ ନା ନିଷ୍ଠୁର ଓ

କନ୍ଦର୍ପ ଧର୍ମଧ୍ୱଜା ? ଏ ରକ୍ଷଣଶୀଳତା କେବଳ ରକ୍ତବିନ୍ଦୁରେ ନୁହେଁ, ଏହା ଅସ୍ଥିମଜ୍ଜାଗତ । ଆମ ଦେଶରେ କଣ ସ୍ୱାଧୀନଚେତା ସାହିତ୍ୟିକ ନାହାନ୍ତି ? ଏ ନେଇ ଲେଖକମାନେ ସାହିତ୍ୟର ଅଙ୍ଗ ପୁଷ୍ଟି କରିପାରନ୍ତି । ମାତ୍ର ନବ୍ୟ ଶିକ୍ଷିତଙ୍କର ଏ ସାହସ କାହିଁ ? ଏ ସ୍ୱାର୍ଥତ୍ୟାଗ କାହିଁ ?

ପ୍ରକୃତ ଶିକ୍ଷାର ଅଭାବ ଯେ ସାହିତ୍ୟ ବିକାଶର ପ୍ରତିବନ୍ଧକରୂପେ ଦେଶରେ ବିଦ୍ୟମାନ, ଏହା କହିବା ବାହୁଲ୍ୟ ମାତ୍ର । ସ୍ତ୍ରୀଶିକ୍ଷାର ଅଭାବ ମଧ୍ୟ ସାହିତ୍ୟ ବିକାଶର ପ୍ରତିବନ୍ଧକ । ଏହା ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ । ମାତ୍ର ସମାଜରେ ସ୍ତ୍ରୀର ସମ୍ମାନ ଓ ସ୍ଥାନକୁ ଟିକିଏ ଉଚ୍ଚ ଭାବିବା ଓ ଉଚ୍ଚ କରିବାକୁ ଚେଷ୍ଟା କରିବା ପ୍ରଥମରୁ ଆବଶ୍ୟକ । ସ୍ତ୍ରୀଜାତିର କୁତ୍ସା, ଅବମାନନା ପୁରୁଷ ଜାତିର ସ୍ପର୍ଦ୍ଧାର ସାମଗ୍ରୀ ଯେଉଁ ଦେଶରେ, ସେ ଦେଶରେ ସ୍ତ୍ରୀଶିକ୍ଷାର ଆଶା ସ୍ୱପ୍ନର କାହାଣୀ । ସ୍ତ୍ରୀ ସେବିକା, କି ସହଧର୍ମିଣୀ ? ସ୍ତ୍ରୀ ସହଚରୀ ନୁହେଁ, ଅନୁଚରୀ । ଏ ଭାବ ପ୍ରଥମରୁ ସମାଜ ଓ ଜାତିର ମନରୁ ନିଷ୍କାସିତ ହେବା ଉଚିତ । ହିନ୍ଦୁ ଜାତି ଭୁଲି ଯାଇଅଛନ୍ତି—"ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।"

ଅବଶେଷରେ ମୋର ମତ ଏହି ଯେ, ସାହିତ୍ୟ ଓ ଭାଷାକୁ ବ୍ୟାକରଣ ବେଷ୍ଟନୀରୁ ଓ ଅବରୋଧରୁ ଟିକିଏ ମୁକ୍ତି ଦେବା ଉଚିତ । ସାହିତ୍ୟ ମୁକ୍ତି ଲାଭ କରି ଉନ୍ମୁକ୍ତ ଭାବରାଜ୍ୟରେ ବିଚରଣ କରୁ, ତୃଣଶସ୍ୟଶ୍ୟାମଳାୟିତ କ୍ଷେତ୍ର, ପର୍ବତ ଶିଖର, ସମୁଦ୍ରକୂଳରେ ବିଚରଣ କରି ସ୍ୱାଧୀନ ବାୟୁ ସେବନ କରୁ । ସାହିତ୍ୟ ପ୍ରତି କୁଟିଳ ସମାଜପତିମାନଙ୍କର ଓ ଜଟିଳ ରାଜନୀତିଜ୍ଞମାନଙ୍କର ଭେଦପୂର୍ଣ୍ଣ ଓ ସ୍ୱାର୍ଥଜଡ଼ିତ ମନ୍ତ୍ରଣାଗାରର ଦ୍ୱାର ଉନ୍ମୁକ୍ତ ରହୁ । ସାହିତ୍ୟ ପ୍ରତି ଧର୍ଷିତା ନାରୀ ଜାତିର ଅବରୋଧାଗାରର ଲୌହ କବାଟ ମଧ୍ୟ ଉଦ୍‌ଘାଟିତ ହେଉ । ଅଳମତି ବିସ୍ତରେଣ ।



(୧୯୧୯ ସାଲ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ)

# ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ସମ୍ବନ୍ଧେ ଦୁଇ ଗ୍ଧର କଥା

ଉତ୍କଳ ସାହିତ୍ୟର ଶ୍ରାବଣ ଓ ଶାରଦୀୟ ସଂଖ୍ୟାରେ ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ଏବଂ କଥା ସାହିତ୍ୟର ଆଲୋଚନା ଆମ୍ଭମାନଙ୍କର ସାହିତ୍ୟ ଚିନ୍ତାଧାରାକୁ ଜଡ଼ୀଭୂତ କରିଅଛି । ଏକ ଆଡ଼େ ଉତ୍କଳ ଭାଷାରେ ଲଘୁ ସାହିତ୍ୟର ବାହୁଲ୍ୟ ଦେଖି ଶଶୀବାବୁଙ୍କ ଭଳି ପ୍ରବୀଣ ସାହିତ୍ୟିକମାନଙ୍କର ଭୟ । ଅନ୍ୟ ଆଡ଼େ ଶଶୀବାବୁଙ୍କ ଭଳି ପ୍ରବୀଣ ସାହିତ୍ୟିକମାନଙ୍କର ମତକୁ ଅନୁବାଦ କରି ହରିହରବାବୁଙ୍କ ଭଳି ନବୀନ ସାହିତ୍ୟିକମାନଙ୍କର ମସୀଯୁଦ୍ଧର ଆୟୋଜନ । ଆମ୍ଭମାନଙ୍କର ଗତି କ'ଣ ? ଆମ୍ଭେମାନେ ନୂତନ ସାହିତ୍ୟିକ ଭାବବନ୍ୟା ଦେଖି ଚିନ୍ତାଗ୍ରସ୍ତ ହୋଇ ତଟସ୍ଥ – କୌଣସି ଉଚ୍ଚଭୂମିର ବୃକ୍ଷମୂଳର ଆଶ୍ରୟ ଗ୍ରହଣ କରିବା କିମ୍ବା ଯୁବା ସାହିତ୍ୟିକମାନଙ୍କୁ କର୍ଣ୍ଣଧାର କରି ସେମାନଙ୍କ ସଙ୍ଗରେ ଏକା ନୌକାରେ ବସି ବନ୍ୟାସ୍ରୋତ ପାରିହେବାର ଚେଷ୍ଟା କରିବା ବିଷମ ସମସ୍ୟା ! ଘର ଅଗୋଚର, ସ୍ରୋତ ଭୟାବହ । ଆପାତତଃ ପୂର୍ବ ପରିଚିତ ବୃକ୍ଷମୂଳ ନିରାପଦ ବୋଲି ଭାବିବା ସ୍ୱାଭାବିକ, ମାତ୍ର ବୃକ୍ଷମୂଳରେ ନିଃସଙ୍ଗ ହୋଇ କି ସୁଖରେ ଜୀବନ ଯାପନ କରିବୁ କାହା ସହିତ ? କିଏ ଆମ୍ଭମାନଙ୍କର ପୌତ୍ରିକସ୍ୱାର୍ଥର ରକ୍ଷକ ହେବ ? ଆମ୍ଭେମାନେ ସନ୍ଦେହଦୋଳାପନ୍ନ । ପାଠକଗଣ ଏଥିର ମୀମାଂସକ ।

ସାହିତ୍ୟ ଶବ୍ଦ ସୁପ୍ରଚଳିତ; ମାତ୍ର ଏ ଶବ୍ଦର ଆକ୍ଷରିକ ମୁଖ୍ୟାର୍ଥ କୌଣସି କୋଷକାର ଦେଇନାହାନ୍ତି । ଯେଉଁ ପ୍ରେମଦ୍ୱାରା ଆମ୍ଭେମାନେ ଲୋକ ସଂଗ୍ରହ କରିପାରୁଁ ବା ଲୋକମତ ସଂଗ୍ରହ କରିପାରୁଁ ବା ଲୋକ-ମଧ୍ୟରେ ଏକତା ଆଣିପାରୁଁ, ତାର ନାମ ସାହିତ୍ୟ । କହିବାକୁ ଗଲେ ଧର୍ମ ଓ ସାହିତ୍ୟର ଉଦ୍ଦେଶ୍ୟ ପ୍ରାୟ ଏକ । ଉଭୟେ ଦୋଷର ନିନ୍ଦା କରନ୍ତି ଏବଂ ଗୁଣର ପ୍ରଶଂସା କରନ୍ତି । ଲୋକଶିକ୍ଷା ହିଁ ଉଭୟର ଉଦ୍ଦେଶ୍ୟ । ଅର୍ଥ ଭେଦରେ ଧର୍ମର ଯେପରି ବ୍ୟତିକ୍ରମ ଘଟିଅଛି, ସାହିତ୍ୟର ମଧ୍ୟ ତଦ୍ରୂପ ବ୍ୟତିକ୍ରମ ଘଟିଅଛି ।

ଅତୀତର ସାହିତ୍ୟିକମାନଙ୍କର ଜାତୀୟ ସ୍ୱର୍ଗପ୍ରାପ୍ତ୍ୟାଶା ଅତି କମ୍, ସୁତରାଂ ଆଳଙ୍କାରିକମାନଙ୍କର କୀର୍ତ୍ତି "ସ୍ୱର୍ଗଫଳା ମାତୃସଂସାରଂ ଜପନ୍ତି ତଃ" ପ୍ରଭୃତି ବାକ୍ୟରେ ଆସ୍ଥା ସ୍ଥାପନ କରି କେବଳ ମହାଭାରତ ପୁରାଣାଦି କୀର୍ତ୍ତିତ ଚରିତ୍ରମାନଙ୍କର ଚର୍ବିତ ଚର୍ବଣ କରିବାକୁ ରାଜି ନୁହନ୍ତି । ମନୁଷ୍ୟ ଯେତିକି ଉନ୍ନତ ପଥରେ ଅଗ୍ରସର ହେଉଛି, ମନୁଷ୍ୟ ଜାତି ପ୍ରତି ତାର ଶ୍ରଦ୍ଧା ଓ ମମତା ସେତିକି ବଢ଼ୁଛି ଏବଂ କ୍ରମେ ବଢ଼ିବ । ସୁତରାଂ ଅଦ୍ୟତନ ମାନବ ସଂସାରର ସୁଖ ଦୁଃଖ, ରୀତି ନୀତି ଓ ଯାବତୀୟ ପରିବର୍ତ୍ତନ ନେଇ ସାହିତ୍ୟର ଗତିକୁ ସାହିତ୍ୟିକ ପରିବର୍ତ୍ତିତ କରିବେ ! ଯେବେ ନରପନ୍ଥୀବାଦୀ ହେଲେ ଚଳନ୍ତି ତ ଏହି ପନ୍ଥା ଅନୁସରଣ କରି ଅଛନ୍ତି । ଏହି ଜନ୍ମତ ବୌଦ୍ଧଙ୍କୁ ଶ୍ରେଷ୍ଠ କରିବାକୁ ସମୟ ସମୟରେ ସେ ଦଳେ ଦଳେ ବୌଦ୍ଧ ଧର୍ମର ଦୋହାଇ ଓ ପ୍ରାଚୀନ ସ୍ମୃତି

ମାତର ବୋହାଇ ନେଇ ନାହାନ୍ତି ବା ନେଇ ନାହାନ୍ତି ତାହା ନୁହେଁ, ମାତ୍ର ସ୍ରୋତ ଅପ୍ରତିହତ, ବାଧାବିଘ୍ନ ନମାନି ଗନ୍ତବ୍ୟ ସ୍ଥାନକୁ ଚାଲିଛି । ଇତିହାସ ଏଥିର ସାକ୍ଷୀ, ଆମ୍ଭେମାନେ ମଧ୍ୟ ପ୍ରତ୍ୟକ୍ଷ କରୁଥାଉଁ । ନା ଭୂମିକା ବଡ଼ ହୋଇଗଲା । ବିଷୟ ଅପେକ୍ଷା ଭୂମିକା ବଡ଼ ହେବା କ୍ଷମାଯୋଗ୍ୟ ନୁହେଁ ।

ସାହିତ୍ୟ ଦୁଇ ପ୍ରକାର—ପଦ୍ୟାତ୍ମକ ଓ ଗଦ୍ୟାତ୍ମକ । ପଦ୍ୟାତ୍ମକ ସାହିତ୍ୟର ଜନ୍ମ ଗଦ୍ୟାତ୍ମକ ସାହିତ୍ୟ ଅପେକ୍ଷା ବହୁ ପୂର୍ବରୁ । ସଂସ୍କୃତ ସାହିତ୍ୟ ପଦ୍ୟବହୁଳ, ପାଲିଭାଷାରେ ଗଦ୍ୟର ପ୍ରଚଳନ ଥିଲେ ମଧ୍ୟ ଆଧୁନିକ ଭାରତୀୟ ଭାଷାମାନଙ୍କରେ ଗଦ୍ୟର ପ୍ରଚୁର ନଥିଲା । ଗଦ୍ୟଟା ପାଶ୍ଚାତ୍ୟ ଭାଷାର ଅନୁକରଣ । ଏ ଅନୁକରଣ ଉନ୍ନତି ବିଧାୟକ । ଏହା ଅତି ଆହ୍ଲାଦର ବିଷୟ ଯେ, ଅଳ୍ପ କେତେଟା ବର୍ଷରେ ଆମ୍ଭମାନଙ୍କର ଗଦ୍ୟ ସାହିତ୍ୟ ଆଶାତୀତ ରୂପେ ଅଗ୍ରସର ହୋଇଅଛି ଏବଂ ଉତ୍କଳ ଭାଷା ଯେ ଗଦ୍ୟ ସାହିତ୍ୟ ପାଇଁ ଅତି ଉପଯୁକ୍ତ ଏଥିରେ ମଧ୍ୟ ଯଥେଷ୍ଟ ପରିଚୟ ମିଳିଅଛି ।

ଭାବ ବିନିମୟ ନିମନ୍ତେ ଗଦ୍ୟର ସ୍ଥାନ ଯେ ପଦ୍ୟ ଅପେକ୍ଷା ଉଚ୍ଚତର, ତାହା କହିବା ବାହୁଲ୍ୟମାତ୍ର । ଗଦ୍ୟ ସାହାଯ୍ୟରେ ସଭ୍ୟତା ବିସ୍ତୃତି ଲାଭ କରୁଅଛି । ଏଣୁ ଉନ୍ନତିଶୀଳ ଜାତି ସମୂହ ଗଦ୍ୟର ପକ୍ଷପାତୀ । ଆମ ଦେଶରେ ଯୁବକମାନେ ସେହି ଉନ୍ନତି ପଥର ଯେ ପକ୍ଷପାତୀ ହେବେ, ଏଥିରେ ତ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । ଯୁବକମାନେ ଯଥାସାଧ୍ୟ ନିଜ ଶିକ୍ଷାଦୀକ୍ଷା ଅନୁସାରେ ମାତୃଭାଷାର ସେବାରେ ମନଃପ୍ରାଣ ଦେଇଅଛନ୍ତି ସୁଖର କଥା, କିନ୍ତୁ ଆମ୍ଭେମାନେ ଦୂରରେ ଦଣ୍ଡାୟମାନ ହୋଇ ସେମାନଙ୍କର ଏତାଦୃଶ ସାହିତ୍ୟିକ କ୍ଷିପ୍ରଗତି ଦେଖି ଦୁଃଖିତ ଓ ଈର୍ଷ୍ୟାନ୍ୱିତ ମଧ୍ୟ ହେଉ । ଉପଦେଶ ଛଳରେ ପଦେ ଦୁଇ ପଦ ଗାଳି ମଧ୍ୟ ଦେଉଁ ଏବଂ କ୍ଷାନ୍ତ ହୁଅ, କ୍ଷାନ୍ତ ହୁଅ ବୋଲି ଚିତ୍କାର ମଧ୍ୟ କରୁଁ । ମାତ୍ର ସେମାନେ ଆମ୍ଭମାନଙ୍କର କଥା ମାନିବେ କାହିଁକି ? ସେମାନଙ୍କ ନିମନ୍ତେ ଆମ ସାହିତ୍ୟରେ କି ଆଦର୍ଶ ଥୁଆ ହୋଇଅଛି, କେଉଁ ପନ୍ଥା ପ୍ରଦର୍ଶିତ ହୋଇଅଛି, କେଉଁ ଉପଦେଶ ଲିପିବଦ୍ଧ ହୋଇଅଛି - ଯାହା ଦେଖି, ପାଠକରି ସେମାନେ ଅନ୍ୟ ସାହିତ୍ୟ ସହିତ ପ୍ରତିଯୋଗିତା କରିବାକୁ ଦଣ୍ଡାୟମାନ ହୋଇ ପାରିବେ ? ପ୍ରାଚୀନତ୍ୱର ମର୍ଯ୍ୟାଦା ରକ୍ଷା କରିବାକୁ ଆମ୍ଭେମାନେ କ୍ଷମ ନୋହୁ । ଯୁବକ-ମାନଙ୍କର ଶୃଙ୍ଖଳନ, ଗତିମତିର ନିୟନ୍ତ୍ରଣ ନିମନ୍ତେ ଆମ୍ଭେମାନେ ସେମାନଙ୍କ ପଛରେ ଗୋଡ଼ାଇବା କି ସେମାନେ ନିୟନ୍ତ୍ରିତ ହେବା ନିମନ୍ତେ ଆମ୍ଭମାନଙ୍କର ପଶ୍ଚାଦ୍ଧାବନ କରିବେ, ଏଥିର ମୀମାଂସା ହୋଇ ନାହିଁ । ଏ ଦେଶରେ ପ୍ରବଳ ଆତ୍ମମର୍ଯ୍ୟାଦାସମ୍ପନ୍ନ ସାହିତ୍ୟ ସମାଜ ନାହିଁ, ଯେ ବିପଥଗାମୀ ସାହିତ୍ୟିକମାନଙ୍କୁ ସୁପନ୍ଥା ଦେଖାଇବ । ନିଜେ ନିଜର ଗୁରୁ । ଆବାଲ୍ୟରୁ ଯେଉଁ ଧୀମାନ୍‌ମାନଙ୍କର କାଳ କେବଳ ଇଂରାଜୀ ବିଦ୍ୟାଭ୍ୟାସରେ ବ୍ୟୟିତ ହେଲା, ସେମାନେ ଯେ ସ୍କୁଲ କଲେଜରୁ ଉତ୍ତୀର୍ଣ୍ଣ ହୋଇ ମାତୃଭାଷାର ଆଲୋଚନାରେ ପ୍ରବୃତ୍ତ ହୁଅନ୍ତି, ଏହା ବଡ଼ ଗୌରବର ବିଷୟ !!

ହଁ ଶଶୀବାବୁ ତାଙ୍କର ଦୁଇଗୋଟି ପ୍ରବନ୍ଧରେ ଅନେକ ବିଷୟ ସ୍ପଷ୍ଟାକ୍ଷରରେ, ଅନେକ ବିଷୟ ଇଙ୍ଗିତରେ ବ୍ୟକ୍ତ କରିଅଛନ୍ତି । ହରିହରବାବୁ ଆଲୋଚନାପୂର୍ବକ ତାଙ୍କ ପ୍ରବନ୍ଧକୁ ଛଅ ଭାଗରେ ବିଶ୍ଳେଷଣ କରିଅଛନ୍ତି ଏବଂ ପ୍ରତ୍ୟେକ ବିଭାଗର ଯଥାଯଥ ପ୍ରତିବାଦ କରିବାର ଚେଷ୍ଟା କରିଅଛନ୍ତି । କିନ୍ତୁ ପ୍ରବୀଣ ପ୍ରତି ଯେ ନବୀନର ସମ୍ମାନ ଅଛି, ତାହା ସେ ଦେଖାଇବାରେ ତ୍ରୁଟି କରିନାହାନ୍ତି, ସୁଖର କଥା । ପ୍ରଥମତଃ ଆମ୍ଭେମାନେ ଯେ ସାହିତ୍ୟ ଶବ୍ଦର ସ୍ଥୂଳ ବ୍ୟାଖ୍ୟା ଦେଲୁଁ, ସେ ଅନୁସାରେ ବଳିଷ୍ଠ ଓ ଲଘିଷ୍ଠ ସାହିତ୍ୟର ପାର୍ଥକ୍ୟ କିଛି ଦେଖାଯାଏ ନାହିଁ । ଭାବ, ଉଦ୍ଦେଶ୍ୟ, ଉପଦେଶ, ଉପାଦେୟତା ଯେବେ ସାହିତ୍ୟର ମଜ୍ଜା, ତେବେ ପଦ୍ୟ ହେଉ ବା ଗଦ୍ୟ ହେଉ ସରଳଲେଖାକୁ ଲଘୁ ସାହିତ୍ୟ ଆଖ୍ୟା ଦିଆଯିବ କାହିଁକି ? ବଳିଷ୍ଠ ସାହିତ୍ୟର ଅର୍ଥ କି ସମାସ ବାହୁଲ୍ୟ, ପଦ-କାଠିନ୍ୟ, ଦୁରନ୍ୱୟତା, ଅପ୍ରଯୋଜ୍ୟତା, ଆଡ଼ମ୍ବରପୂର୍ଣ୍ଣ ଓ ଅଯଥା ବର୍ଣ୍ଣନା ? ଲେଖକ ବା ସମାଲୋଚକ ଏହି ଦୁଇ ଶ୍ରେଣୀର ସାହିତ୍ୟର ବ୍ୟାଖ୍ୟା ନ ଦେଇ ଆମ୍ଭମାନଙ୍କୁ

ସନ୍ଦେହ-ସାଗରରେ ଭସାଇ ଦେଇଅଛନ୍ତି । ଆମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିରେ ଏ ନିୟମରେ ସାହିତ୍ୟର ଶ୍ରେଣୀ ବିଭାଗ ଭ୍ରାନ୍ତି-ଉତ୍ପାଦକ ।

ସାହିତ୍ୟର କାବ୍ୟାଂଶକୁ ମହାକାବ୍ୟ, ଖଣ୍ଡକାବ୍ୟ, ସଂପୂର୍ଣ୍ଣ ଅସଂପୂର୍ଣ୍ଣ କାବ୍ୟ, ଗୀତି କବିତା ରୂପରେ ବିଭାଗ କରିବା ସମୀଚୀନ । ଏତାଦୃଶ ବିଭାଗ ଚିରକାଳ ହୋଇ ଆସୁଅଛି । ଚିରକାଳ କବିମାନେ ଏହି ଧରଣର କାବ୍ୟ, କବିତା ଲେଖି ଆସୁଅଛନ୍ତି । ଶଶୀବାବୁ ଉତ୍କଳର ପ୍ରାଚୀନ କବିମାନଙ୍କର ତାଲିକା ପର୍ଯ୍ୟାୟକ୍ରମରେ ସେମାନଙ୍କର ଲିଖିତ ପୁସ୍ତକର ତାଲିକା ସହିତ ପ୍ରବନ୍ଧରେ ପ୍ରକାଶ କରିଅଛନ୍ତି । ଏଗୁଡିକ ବଳିଷ୍ଠ କାବ୍ୟ କି ? ଅବଶ୍ୟ ! ନୋହିଲେ ଯୁବା ଲେଖକମାନଙ୍କର ଲେଖାର ସମାଲୋଚନା କରିବାକୁ ଯାଇ ଏ ତାଲିକା ଦେବାର ଅର୍ଥ କଣ ? ଏହି ତାଲିକାରେ ଯେମନ୍ତ ପଦାର୍ଥ ଅଛି, ସେହିପରି ଅପଦାର୍ଥ ମଧ୍ୟ ଅଛି । ଆଧୁନିକ ଲେଖାର ସବୁ ସାର ଅସାର ନାହିଁ । ଏହା କହିବାକୁ ସାହସ ନାହିଁ । ପ୍ରତିଭାର ପାର୍ଥକ୍ୟ ସବୁ ଯୁଗରେ ଅଛି । ଉଚ୍ଚନୀଚର ଭେଦ ସବୁ ଯୁଗରେ ଅଛି ।

ଚୈତନ୍ୟ ଅବଶ୍ୟ ଓଡ଼ିଶାବାସୀଙ୍କି କାଠ-ମାଳ ପିନ୍ଧାଇ ନାମ ସଂକୀର୍ତ୍ତନ ଶିକ୍ଷା ଦେଇଥିଲେ; ମାତ୍ର ଓଡ଼ିଆ ସାହିତ୍ୟ ରଚନାରେ ତାଙ୍କର କୌଣସି ହାତ ଥିବାର ଆମ୍ଭମାନଙ୍କର ହୃଦୟଙ୍ଗମ ହେଉନାହିଁ । ଚୈତନ୍ୟ ସମ୍ପ୍ରଦାୟ ଭିନ୍ନ ଓଡ଼ିଶାରେ ଚୈତନ୍ୟଙ୍କ ଆବିର୍ଭାବ ପୂର୍ବରୁ ବୌଦ୍ଧଭାବ ସମ୍ମିଶ୍ରିତ ବିଶୁଦ୍ଧ ବୈଷ୍ଣବ ଧର୍ମର ପ୍ରଭାବ ଥିବାର ଉଦାହରଣ ମିଳେ । ଜଗନ୍ନାଥ ଦାସ ବୌଦ୍ଧ ମାହାତ୍ମ୍ୟକୁ ହେୟ ଜ୍ଞାନ କରି ତାଙ୍କ ରଚନାରୁ ବିସର୍ଜନ ଦେଇ ନାହାନ୍ତି ।

ଦ୍ୱିତୀୟ :—୧୫୦ ବର୍ଷର କବିପୁଙ୍ଗବମାନଙ୍କୁ ଆମ୍ଭେମାନେ ବିଜୁଳି-ଇନ୍ଦ୍ରଧନୁ ମୁଣ୍ଡରେ ଗୁରଖାର କରି ଦେଇଅଛୁଁ । ସେମାନେ ଆମ୍ଭମାନଙ୍କର ଆଦର୍ଶ ନୁହନ୍ତି । ସେମାନଙ୍କର କଥା ଭାବି ଅରଣ୍ୟରୋଦନ କରିବାର ପ୍ରୟୋଜନ କଣ ?

ତୃତୀୟ :—୬୦ ବର୍ଷର ପୂର୍ଣ୍ଣ କାବ୍ୟସମୂହ ଆମ୍ଭମାନଙ୍କର ଆଦର୍ଶରୂପେ ଗଣ୍ୟ ହେଉଥିଲେ । ଏବେ ମଧ୍ୟ ସେହି କାବ୍ୟମାନଙ୍କର ଆଧିପତ୍ୟ ଯୁବକମାନଙ୍କ ହୃଦୟରେ ସ୍ଥାନ ପାଇଅଛି । ଏହି ୬୦ ବର୍ଷ ମଧ୍ୟରେ କି କେବଳ ପୂର୍ଣ୍ଣକାବ୍ୟ ଓ ଖଣ୍ଡକାବ୍ୟ କବିମାନଙ୍କ ଦ୍ୱାରା ରଚିତ ହୋଇଥିଲା । ଖଣ୍ଡ କବିତାର ଓ ଗୀତି କାବ୍ୟର ଜନ୍ମ ହୋଇନାହିଁ ? ସେତେବେଳର ଗୀତି ସାହିତ୍ୟ ମଧ୍ୟରେ କି ବିଚ୍ଛିନ୍ନତା ଓ ଖଣ୍ଡତାର ବୀଜ ନିହିତ ନାହିଁ ? ଏହି ସମୟର କବି ଫକୀରମୋହନ ସେନାପତି ବହୁ ପରିଶ୍ରମ କରି ରାମାୟଣ ଓ ମହାଭାରତ ଲେଖିଥିଲେ ମାତ୍ର ଦେଶବାସୀଙ୍କ ଗୃହରେ ତାଙ୍କର ଏହି ଦୁଇ ସମ୍ପୂର୍ଣ୍ଣ କାବ୍ୟ ସାରଳାଦାସଙ୍କ ମହାଭାରତ ଏବଂ ବଳୀ ରାମାୟଣ ଓ ଦାଣ୍ଡି ରାମାୟଣ ପରି ଆଦୃତ ହେଲା ନା ପୂଜା ପାଇଲା ? ଫକୀରମୋହନଙ୍କର ଉଦ୍ଦେଶ୍ୟ ମହତ ମାତ୍ର ସେ ଉଦ୍ଦେଶ୍ୟର ସଫଳତା କେଉଁଠାରେ । ଦେଖି ଦେଖି ଯୁବକମାନେ ଚର୍ବିତ ଚର୍ବଣ କରିବାକୁ ଯିବେ କାହିଁକି ? ରାଧାନାଥଙ୍କର କାବ୍ୟ ଅନୁକରଣରେ ଏ ଦେଶର କବିମାନେ କ୍ଷୁଦ୍ର ଓ ବୃହଦାକାରରେ ଅସଂଖ୍ୟ କାବ୍ୟ ଲେଖି ପକାଇଲେ । ସେ ଯୁଗ ଗଲା, ସେ ସବୁ କାବ୍ୟ ଲୁପ୍ତ ପ୍ରାୟ । ରାଧାନାଥ ଓ ମଧୁସୂଦନ ମଧ୍ୟ କ୍ଷୁଦ୍ର କବିତା ଓ ଗୀତି କାବ୍ୟର ପଥପ୍ରଦର୍ଶକ । ଗୀତିକାବ୍ୟର ଓ କ୍ଷୁଦ୍ର କବିତାର ସ୍ରୋତ ଚାଲିଛି । ମାତ୍ର ତାହା ଗଡ୍ଡଳିକା ପ୍ରବାହ ଭଳି ନୁହେଁ ।

ଚତୁର୍ଥ :—୧୫ ବର୍ଷର ଯୁବା କବିମାନଙ୍କର କ୍ଷୁଦ୍ର କବିତା ଓ ଗୀତିକାବ୍ୟ ଆମ୍ଭେମାନେ ନୂଆ ଛନ୍ଦରେ ନୂଆ ଭାବରେ ଦେଖିବାକୁ ପାଉଁ, ତଥାପି କବିତାବଳୀ ଓ ଛାନ୍ଦମାଳାର କବିତା ସହିତ ଆଧୁନିକ ଲେଖକମାନଙ୍କର କବିତା ମଧ୍ୟରେ ଅସମାନ-ଜମିନର ପ୍ରଭେଦ ଆମ୍ଭମାନଙ୍କର ଦୃଶ୍ୟ ହୁଏ ନାହିଁ । ତୃତୀୟ ୬୦

ବର୍ଷର କବିମାନେ ନୂତନ ଛନ୍ଦରେ ଗୀତିକାବ୍ୟ ଓ କ୍ଷୁଦ୍ର କବିତା ଲେଖି ପ୍ରାଚୀନ ଛାନ୍ଦପ୍ରେମୀଙ୍କ ଦ୍ୱାରା ନିନ୍ଦିତ ହୋଇଥିଲେ କି ? ତେବେ ଚତୁର୍ଥ ୧୫ ବର୍ଷର କବିମାନେ ନୂତନ ଛନ୍ଦ ନିମନ୍ତେ କିଛି ହେଲେ ନିନ୍ଦା ପାଇବେ ନାହିଁ କାହିଁକି ? ଅମିତ୍ରାକ୍ଷର ଛନ୍ଦ ନିମନ୍ତେ ରାଧାନାଥ ମଧ୍ୟ ନିନ୍ଦାଭାଜନ ହୋଇଥିଲେ । ଏବେ ଅମିତ୍ରାକ୍ଷର ଛନ୍ଦକୁ କେହି ଅସୁଖ ମଣୁ ନାହାନ୍ତି । ଯୁବା କବିମାନଙ୍କ ଦ୍ୱାରା ଲିଖିତ ନୂଆ ଛନ୍ଦ କିଛି ଦିନ କର୍ଣ୍ଣ ଓ ରୁଚି ବହିର୍ଭୂତ ହୋଇପାରେ; ମାତ୍ର ସମୟ ଆସିବ, ଯେତେବେଳେ ସେହି ହେୟ ଛନ୍ଦଗୁଡ଼ିକ ସୁଶ୍ରାବ୍ୟ ଓ ସୁଖକର ହେବ ।

କବି ମାନେହିଁ ନିଜ ରଚନାରେ ଭାବ-ବିକାଶର ବୈଚିତ୍ର୍ୟ ରକ୍ଷା କରିବାକୁ ଚେଷ୍ଟା କରିଥାନ୍ତି । ପ୍ରତିଭାର ତାରତମ୍ୟ ହେତୁ କବିତାର ତାରତମ୍ୟ ଘଟେ । ଏପରି ପୂର୍ବେ ଘଟୁଥିଲା, ଏବେ ମଧ୍ୟ ଘଟୁଅଛି । ସଂପୂର୍ଣ୍ଣ ବା ଖଣ୍ଡକାବ୍ୟ ଲେଖକ ମାଳାକାର ନ୍ୟାୟ । ମାଳାକାର ଯେପରି ନାନା ପୁଷ୍ପକୁ ଏକତ୍ର ସନ୍ନିଭୂତ କରି ଗୋଟିଏ ମାଳ ପ୍ରସ୍ତୁତ କରେ, କାବ୍ୟର କବି ସେହିପରି ନାନା ବିଷୟକୁ ନାୟକ ନାୟିକା ବା ବସ୍ତୁ ସୂତ୍ରରେ ଏକତ୍ର ଗୁନ୍ଥେ । ସୁଦକ୍ଷ ମାଳାକାର ଦ୍ୱାରାହିଁ ପୁଷ୍ପହାର ସୁଶ୍ରୀ ଓ ମନୋରମ ହୁଏ । ସେହିପରି ସୁଦକ୍ଷ କବିର ହାତରେ କାବ୍ୟରସ ମାଧୁର୍ଯ୍ୟପୂର୍ଣ୍ଣ ହୁଏ । ମାଳାକାରର ଦକ୍ଷତା ହେତୁରୁ କୀଟଦଂଷ୍ଟ ଓ ଅସାର ଫୁଲ ଦ୍ରଷ୍ଟାର ଲକ୍ଷ୍ୟ ବହିର୍ଭୂତ ହୁଏ । ସେହିପରି ସୁକବିଙ୍କର ରଚନା-ଗୁରୁତ୍ୱଦ୍ୱାରା ଅସାର ବସ୍ତୁ ଲୁଚି ସାର ଓ ସୁନ୍ଦର ବୋଲି ବିବେଚିତ ହୋଇଥାଏ । ବଗିଚାର ମାଳୀ ହାର ପ୍ରସ୍ତୁତ ନିମନ୍ତେ ସାର ଅସାର ଫୁଲ ଗ୍ରହଣ କରିଥାଏ; କିନ୍ତୁ ଜଣକୁ ଗୋଟାଏ ଫୁଲ ଭେଟି ଦେବାର ପ୍ରୟୋଜନ ହେଲେ ତାକୁ ବହୁ କଷ୍ଟରେ ଗୋଟିଏ ନିଷ୍କଳଙ୍କ ଫୁଲ ଅନ୍ୱେଷଣ କରିବାକୁ ପଡ଼େ । କ୍ଷୁଦ୍ର କବିତା ଲେଖକକୁ ସେହିପରି ବସ୍ତୁ ବର୍ଣ୍ଣନା ବିଷୟରେ ବହୁ ଯତ୍ନ କରିବାକୁ ପଡ଼େ ।

ଗୀତି କବିତାର ବାଲ୍ୟାବସ୍ଥାରେ ଯୌବନ ସୌନ୍ଦର୍ଯ୍ୟ ଉପରେ ବାସନା ଦୁର୍ବାଶା ମାତ୍ର । ବେଶ ଚାଲିଛି, ଚାଲୁ ।

କବୀନ୍ଦ୍ର ରବୀନ୍ଦ୍ର ବିଶ୍ୱକବି । ତାଙ୍କର ସର୍ବତୋମୁଖୀ ପ୍ରତିଭାରେ ଖଣ୍ଡତାଭିମୁଖୀ ଶକ୍ତି ଯେ ବୈଚିତ୍ର୍ୟ ହିଁ ପ୍ରସବ କରିବ, ସେଥିରେ ଆଶ୍ଚର୍ଯ୍ୟାନ୍ୱିତ ହେବାର କିଛି ହିଁ କାରଣ ନାହିଁ । ମାତ୍ର ଖଣ୍ଡତା ବୈଚିତ୍ର୍ୟ ପ୍ରସବ କରୁଛି ଓ କରିବ । ମାତ୍ର ଖଣ୍ଡତା ତାଙ୍କ କଲମରେ ପୂର୍ଣ୍ଣତା ପ୍ରସବ କରିପାରିଛି କି ପାରିବ ? ସେ ପ୍ରବୀଣ ବହୁଦର୍ଶୀ, ତାଙ୍କର ଖଣ୍ଡତା ଯେଉଁ ବୈଚିତ୍ର୍ୟ ଏତେ ଦିନରେ ପ୍ରସବ କରିଅଛି, ଆମ ନବୋଦ୍ୟମୀ ଯୁବକ-ମାନଙ୍କର ଲେଖନୀ ଯେ କାଳେ ତଦ୍ରୂପ ବୈଚିତ୍ର୍ୟ ପ୍ରସବ କରିପାରିବ ନାହିଁ, ଏହା କିଏ କହିପାରିବ ? ରବୀନ୍ଦ୍ରନାଥ ଯେଉଁ ଗୀତାଞ୍ଜଳି ହେତୁରୁ ନୋବେଲ ପ୍ରାଇଜ ପାଇଅଛନ୍ତି ସେହି ଗୀତାଞ୍ଜଳି ଅନେକ ପାଠକଙ୍କ ପ୍ରତି ଅବୋଧ ଓ ଦୁର୍ବୋଧ । ତା ଛଡ଼ା ପ୍ରତିନିୟତ ତାଙ୍କ କଲମରୁ ନୂତନ ନୂତନ ଛନ୍ଦ ବାହାରୁଅଛି । ଏପରି ଛନ୍ଦ ବାହାରିଅଛି ଯାହା ଗଦ୍ୟ କି ପଦ୍ୟ ତାହା ମଧ୍ୟ ବୁଝାଯାଏ ନାହିଁ । ଅଥଚ ତାଙ୍କ ଲେଖା ବିରୁଦ୍ଧରେ କେହି ତ ପଦେ ହେଲେ ଉଚ୍ଚବାଚ କରି ନାହାନ୍ତି । ପୂର୍ବର କବିମାନେ ଅନ୍ୟଦ୍ୱାରା ଆବିଷ୍କୃତ ଛନ୍ଦରେ ରଚନା କରୁଥିଲେ । ଏଣିକି କବିମାନେ ନିଜ ଇଚ୍ଛାନୁସାରେ ଛନ୍ଦ ଓ କବିତା ଲେଖିବାର ପକ୍ଷପାତୀ । ମନା କରୁଛି କିଏ ? ମନା କଲେ ବା ମାନୁଛି କିଏ ?

ସାହିତ୍ୟପରି ସଭ୍ୟତାର ମାପକାଠି ? ସାହିତ୍ୟ ଓ ସଭ୍ୟତା ପରସ୍ପର ସମ୍ବନ୍ଧ । ଏକର ଅଭାବ ଦ୍ୱାରା ଅନ୍ୟର ଅବନତି ଜଣାଯାଏ । ଇଂରେଜ ଜାତି ଉନ୍ନତିର ଉଚ୍ଚ ସୋପାନରେ ଆରୋହଣ କରୁଥିବା ଅବସ୍ଥାରେ ତାଙ୍କ ସାହିତ୍ୟକୁ ବଳହୀନ ଓ ପତନୋନ୍ମୁଖ ବୋଲିବା ସମୀଚୀନ ନୁହେଁ ।

ଇଂରେଜ କବିମାନଙ୍କ ସମ୍ବନ୍ଧେ ଶଶୀବାବୁ ଯଥେଷ୍ଟ ଆଲୋଚନା କରିଅଛନ୍ତି । ହରିହରବାବୁ ସେ ସମ୍ବନ୍ଧେ ଯେଉଁ ମତବାଦ କରିଅଛନ୍ତି ସେ ବିଷୟରେ ପଦେଅଧେ କହିବାର ଅଧିକାର ଇଂରାଜୀ କାବ୍ୟରସିକଙ୍କ

